# ମାନସିଂହଙ୍କ ପ୍ରଣୟ ଚିଟାଉ

ଡକ୍ଟର ମାୟାଧର ମାନସିଂହ

କଟକ ପବ୍ଲିଶିଂ ହାଉସ

ପ୍ରକାଶକ :

ଶ୍ରୀ ରବୀନ୍ଦ୍ରନାଥ ମହାନ୍ତ

କଟକ ପବ୍ଲିଶିଂ ହାଉସ୍

ବାଲୁବଜାର, କଟକ-୨

ଲେଖକ :

ଡକ୍ଟର ମାୟାଧର ମାନସିଂହ

ମୂଲ୍ୟ :

[illegible] ଟଙ୍କା ମାତ୍ର

ମୁଦ୍ରଣ :

ନଉ ପବ୍ଲିଶିଂ ପ୍ରେସ୍

ବାଲୁବଜାର, କଟକ-୨

# ଉପକ୍ରମଣିକା

ଉତ୍କଳ ସାରସ୍ୱତ ଜଗତରେ କବି ମାମ୍ୱାଧର ମାନସିଂହଙ୍କ ପ୍ରତିଭା ସର୍ବଦା ଜାଜ୍ୱଲ୍ୟମାନ୍ । ସାହିତ୍ୟର ବିଭିନ୍ନ ବିଭାବକୁ ମାନସିଂହ ଗମ୍ଭୀରଭାବେ ଋଦ୍ଧ ଉପାସିତ କରିଛନ୍ତି । ନିଜ ଦୁଃଖରେ ବେଳେ ବେଳେ ମ୍ରିୟମାଣ ହେଲେ ସୁଦ୍ଧା, କବିତା ଲେଖିବା ବେଳେ ମାନସିଂହ ପ୍ରାୟଶଃ ସେ ଦୁଃଖ ଦୈନ୍ୟକୁ ଭୁଲି ଯାଉଥିଲେ । "ଆନନ୍ଦେ ଗୀତ ଗାଆରେ ଚିତ୍ତ, ଆନନ୍ଦେ ଗୀତ ଗାଆ" ଏଇ ହେଉଛି ମାନସିଂହଙ୍କର ଗୋଟିଏ କବିତାର ଶିରୋନାମା; ତାଙ୍କ ସାହିତ୍ୟ ସାଧନାର ଗୋଟିଏ ପ୍ରଧାନ ସନ୍ଦେଶ ।

ପ୍ରେମ, ଆନନ୍ଦ, ଯୌବନ, ରସିକତା, କଳ୍ପନାପ୍ରବଣତା ଏ ସବୁ ମାନସିଂହଙ୍କ ହୃଦୟକୁ ପଲ୍ଲବିତ କରୁଥିଲା । ସୌନ୍ଦର୍ଯ୍ୟ ଉପାସକ ରୂପେ ଜୀବନକୁ ସେ ମନୋହର କରି ଗଢ଼ି ତୋଳିବାକୁ ଚାହୁଁଥିଲେ । ସ୍ୱର୍ଗୀୟ ପ୍ରେମରେ ଓତପ୍ରୋତଃ ଜଡ଼ିତ ହୋଇ ରହିଥିଲେ । ପ୍ରେମର ଶକ୍ତି ଅସୀମ । ପ୍ରେମର ମାଦକତା ଅପୂର୍ବ । ଏହା ମାନସିଂହଙ୍କ ଅନେକଟି କାବ୍ୟ-କବିତାର ସାର ମର୍ମ ।

କବିତା ଲେଖିବାରେ ସେ ଯେପରି ଯଶସ୍ୱୀ, ପ୍ରେମପତ୍ର ଲେଖିବାରେ ସେହିପରି ଅତୁଳନୀୟ । ହେମଲତାଙ୍କୁ ବିବାହ ପରେ ଯେତେ ସବୁ ଚିଠି ସେ ଲେଖିଛନ୍ତି ସେଥିରେ ପ୍ରେମ, ପ୍ରୀତି, ସ୍ନେହ, ସୋହାଗ ସ୍ୱତଃସ୍ଫୂର୍ତ୍ତି ଭରିହୋଇ ଯାଇଛି । ଅକଳ୍ପନୀୟ ଭାବେ ସେ ନିଜ ପତ୍ନୀଙ୍କୁ ପ୍ରାଣଭରି ଭଲ ପାଉଥିଲେ । ଅନ୍ତରର ନିବିଡ଼ତମ ପ୍ରଦେଶରୁ ପ୍ରେମ ସମ୍ଭାଷଣ ଜଣାଉଥିଲେ । ପ୍ରେମରେ କବି ହୃଦୟ କିପରି ଭାବ ଗଦ୍‌ଗଦ୍ ହେଉଥିଲା ଏବଂ ହେମଲତାଙ୍କୁ ଜୀବନ ସାଥୀ ରୂପେ ପାଇ ମାନସିଂହ କିପରି ଆତ୍ମବିଭୋର ହୋଇଥିଲେ, ତାହା ଅବର୍ଣ୍ଣନୀୟ । କାୟମନୋ-ବାକ୍ୟରେ ମାନସିଂହ ଥିଲେ ହେମଲତାଙ୍କ ପ୍ରେମରେ ପରିପୂର୍ଣ୍ଣ ରୂପେ ନିବେଦିତ ପ୍ରେମିକ । ଜୀବନ ସାରା ସେ ଥିଲେ ପ୍ରେମିକ, ପରମ ପ୍ରେମିକ ।

ବିବାହ ପରେ ଯେତେବେଳେ ହେମଲତା ମୟୂରଭଞ୍ଜରେ ନିଜ ବାପ ମା'ଙ୍କ ସହିତ ରହିଥିଲେ ଏବଂ ମାୟାଧର ମାନସିଂହ କଟକ ରେଭେନ୍‌ସା କଲେଜରେ ଅଧ୍ୟୟନ କରୁଥିଲେ, ସେତିକବେଳୁ ମାନସିଂହଙ୍କର ପ୍ରେମପତ୍ର ଲିଖନ ସ୍ରୋତ ଛୁଟିଲା । ପରେ କଟକ ଟ୍ରେନିଂ କଲେଜ୍‌ରେ ପାଠ ପଢ଼ୁଥିବା ବେଳେ, ନିମାପଡ଼ାରେ ଶିକ୍ଷକତା କରୁଥିବା ବେଳେ, କଳାହାଣ୍ଡି ଭବାନୀପାଟଣା ହାଇସ୍କୁଲରେ ଶିକ୍ଷକ ଥିବା ବେଳେ, ବିଲାତରେ ପି. ଏଚ୍. ଡି. ଲାଗି ଗବେଷଣାରତ ଥିବା ବେଳେ, ଇଷ୍ଟର୍ଣ୍ଣ

ଷ୍ଟେଟସ୍ ଗଡ଼ଜାତ ରାଜ୍ୟମାନଙ୍କର ଶିକ୍ଷା ପରାମର୍ଶଦାତା ହୋଇଥିବା ସମୟରେ, ଗଙ୍ଗାଧର ମେହେର କଲେଜ୍ ଏବଂ ଖଲ୍ଲିକୋଟ କଲେଜ୍ ଅଧ୍ୟକ୍ଷ ପଦବୀରେ ରହିଥିବା ବେଳେ କବି-ପତ୍ନୀ ହେମଲତାଙ୍କ ନିକଟକୁ 'ମାୟାଧର ମାନସିଂହ ଗଣି ଗଣି ଚିଠି ଲେଖିଛନ୍ତି । ଗଦ୍ୟରେ ଚିଠି ଲେଖିଛନ୍ତି, କବିତା ଆକାରରେ, ପଦ୍ୟରେ ବି ଚିଠି ପଠାଇଛନ୍ତି । ଏପରି ପ୍ରାଣ ଖୋଲି ଯୌବନାବସ୍ଥାରେ ପ୍ରେମ ନିବେଦନ କରିଛନ୍ତି, ଯାହାକି କେବଳ କବି-ହୃଦୟରେ ସମ୍ଭବ । ପରିଣତ ବୟସରେ ଗୃହସ୍ଥ ଓ ସନ୍ତାନ-ସନ୍ତତିଙ୍କ ଜନକରୂପେ ସମସ୍ତଙ୍କ ପ୍ରତି ସ୍ନେହ ଶ୍ରଦ୍ଧା ପ୍ରଦର୍ଶନ କରିବାକୁ ସେ ବ୍ୟାକୁଳ ହୋଇଥିଲେ । କିଶୋର ମାୟାଧର ଓ ଯୁବକ ମାୟାଧର ପ୍ରେମପତ୍ର ଲେଖନ୍ତୁ, ଅଥବା ବୟସ୍କ ଡକ୍ଟର ମାନସିଂହ ପତ୍ନୀଙ୍କ ନିକଟକୁ ଘରୋଇ ବ୍ୟାପାରରେ ଚିଠି ଲେଖି ପିଲାମାନଙ୍କ ହାଲଚାଲ୍ ବୁଝନ୍ତୁ, ପ୍ରତ୍ୟେକଟି ଚିଠିରେ ରହିଛି ଅପୂର୍ବ ମାଦକତା, ଅଜସ୍ର ସ୍ନେହ ସୋହାଗ ।

ଶ୍ରୀମତୀ ମାନସିଂହଙ୍କୁ ଲେଖିଥିବା ଡକ୍ଟର ମାନସିଂହଙ୍କ ଚିଠିଗୁଡ଼ିକରୁ କେତେ ଖଣ୍ଡି ପାଠ କଲେ, ମନେହୁଏ ଏହି ଦମ୍ପତିଙ୍କ ପାରିବାରିକ ଜୀବନରେ ଯେଉଁ ଅପରିସୀମ ପ୍ରେମ ଓ ଅତୁଳନୀୟ ପ୍ରଣୟ ପରିବ୍ୟାପ୍ତ ହୋଇଥିଲା, ତାହା କେବଳ ଅକଳନୀୟ ନୁହେଁ—ଅତୀବ ବିରଳ । ହେମଲତାଙ୍କୁ ପତ୍ନୀ ରୂପେ ଲାଭ କରି ମାନସିଂହ "ପ୍ରଣୟ ଓ ପ୍ରେମର ଇଡେନ୍ ଉଦ୍ୟାନ"ରେ ବସିବା ସୌଭାଗ୍ୟ ପାଇଥିଲେ ବୋଲି ନିଜେ ସ୍ୱୀକାର କରିଛନ୍ତି । ଖଣ୍ଡିଏ ଚିଠିରେ ସେ ଲେଖିଛନ୍ତି "ମୋ ଜୀବନର ଅନ୍ଧାର ରାତି"..."ହେମ ତାରକାର ସ୍ନିଗ୍ଧ କିରଣରେ ଉଦ୍ଭାସିତ ହୋଇଥିଲା ।" ଆଉ ଖଣ୍ଡିଏ ଚିଠିରେ ହେମଲତାଙ୍କୁ ଲେଖିଥିଲେ, "ତମର ନିବିଡ଼ ସ୍ନେହ ଏ ନିରାଶାମୟ ଜୀବନରେ ଏକମାତ୍ର ଆଶାର ପ୍ରଦୀପ ।" ସେଇ ଚିଠିରେ ଆହୁରି ମଧ୍ୟ ଲେଖିଥିଲେ—"ତମେ ଏଇ ଦାରିଦ୍ର୍ୟ ଓ ଅଧମର କ୍ରମେ କ୍ରମେ ସ୍ନେହର ପାତ୍ର ନ ହୋଇ ପୂଜାର ପାତ୍ର ହୋଇ ଉଠୁଛ ।"

ଯେଉଁ ଗଭୀର ଓ ଅନାବିଳ ଦାମ୍ପତ୍ୟ ପ୍ରେମ ମାନସିଂହଙ୍କ ପ୍ରେମପତ୍ର-ମାନଙ୍କରେ ବିଚ୍ଛୁରିତ ହୋଇଛି, ସେଥିରୁ ଜଣାଯାଏ ମାନସିଂହ ଯେପରି ଉଚ୍ଚ-କୋଟୀର ପ୍ରେମିକ ଓ ରସିକ ସ୍ୱାମୀ ଥିଲେ, ହେମଲତା ମାନସିଂହ ବି ସେହିପରି ଅନନ୍ୟ ସାଧାରଣ ପ୍ରିୟତମା ରୂପେ ମାନସିଂହଙ୍କ ହୃଦୟ ସିଂହାସନରେ ବିରାଜମାନ ହୋଇ ପାରିଛନ୍ତି । ହେମଲତାଙ୍କ ରୂପଲାବଣ୍ୟରେ ମାନସିଂହ କି ତନ୍ମୟ ହୋଇ ପଡ଼ି ନଥିଲେ ?? କହିବାକୁ ଗଲେ, ପ୍ରେମରେ ସାରା ଜୀବନ ପ୍ଲାବିତ ହୋଇ ଯାଇଥିଲେ । ହେମଲତାଙ୍କ ବ୍ୟକ୍ତିତ୍ୱ କି ଉଦାର ଓ ମହାନ୍, ତାହା ମାନସିଂହ ନିବିଡ଼ ଉପଲବ୍ଧି କରିଥିଲେ ଏବଂ ତନ୍ମୟ ହୋଇ ଯାଇଥିଲେ । ମାନସିଂହ ଲେଖୁଥିଲେ—ହେ ସଖି ! ମୁଁ ଯେ ରୂପ ଭିଖାରୀ ??

ମାନସିଂହଙ୍କ ସାରା ଜୀବନ ହେମଲତାଙ୍କ ନିକଟରେ ପ୍ରେମଋଣରେ ହୋଇ ରହି ଯାଇଛନ୍ତି । ଉତ୍କଳର ମାନସିଂହ ଖଲ୍ଲିକୋଟ କଲେଜ ପ୍ରିନ୍‌ସିପାଲ୍ ଥିବା ବେଳେ ପତ୍ନୀଙ୍କ ନିକଟ ପଠାଇଥିବା ଚିଠିରୁ ଜଣାଯାଏ, ହେମଲତା ମାନସିଂହଙ୍କୁ ସେ ତାଙ୍କର "ପ୍ରାଣର ସମ୍ପଦ" ବୋଲି ସର୍ବଦା ଗ୍ରହଣ କରିଥିଲେ । ହେମଲତାଙ୍କ ଲାଗି ମାନସିଂହଙ୍କର ଥିଲା ଅକୃତ୍ରିମ ଗର୍ବ । ଅନୁରାଗ-ରଂଜିତ ଗର୍ବ, ଯାହାକି ହେମଲତାଙ୍କ ବ୍ୟକ୍ତିତ୍ୱର ଗୌରବ ଏବଂ ମାନସିଂହଙ୍କର ସୌଭାଗ୍ୟ ।

ନିଜ ପୁତ୍ର କନ୍ୟାମାନଙ୍କୁ ମାନସିଂହ ପ୍ରାଣଠାରୁ ଅଧିକ ସ୍ନେହ ଶ୍ରଦ୍ଧା ଓ ସୋହାଗ କରୁଥିଲେ । ସେମାନଙ୍କ ଭବିଷ୍ୟତ ଉନ୍ନତି ଲାଗି ମାନସିଂହଙ୍କର ଆଶା ଆକାଙ୍‌କ୍ଷା କେତେକ ଚିଠିରେ ପ୍ରତିଫଳିତ ହୋଇଛି । ଏକାନ୍ତଭାବେ ସନ୍ତାନବତ୍ସଳ ଏବଂ ପ୍ରେମିକ ସ୍ୱାମୀ ଜଣେ ନିଜ ପ୍ରିୟତମାଙ୍କ ନିକଟରେ ହୃଦୟ ଖୋଲି ଯାହା ଯେତେବେଳେ ନିଃସଙ୍କୋଚରେ କହିବାକୁ ଚାହିଁଥିଲେ, ଚିଠିମାନଙ୍କରେ ସେ ସମସ୍ତ ଲିପିବଦ୍ଧ ହୋଇଛି ।

ମାନସିଂହଙ୍କ ଚିଠିମାନଙ୍କରେ ରହିଛି ଶାଶ୍ୱତ ପ୍ରେମ ନିଦର୍ଶନ । ଯିଏ ଚିଠି ଲେଖିଛନ୍ତି ଏବଂ ଯାହାଙ୍କ ନିକଟ ଚିଠି ଲେଖାଯାଇଛି, ଦୁଇ ପ୍ରାଣୀ କିପରି ଏକ-ମନ ଏକପ୍ରାଣ ହୋଇ ସଂସାର ଗଢ଼ୁଥିଲେ ଏବଂ ପରସ୍ପରକୁ ହୃଦୟର ଗଭୀରତମ ପ୍ରଦେଶରୁ ଜୀବନସାରା ଭଲ ପାଉଥିଲେ, ତାହା ଏହି ଚିଠାଉମାନଙ୍କର ପ୍ରତ୍ୟେକଟି ଶବ୍ଦରେ ପରିସ୍ଫୁଟିତ ହୋଇଛି । ଉଭୟଙ୍କର ଥିଲା ହୃଦୟର ଅବିଚ୍ଛେଦ୍ୟ ମିଳନ । କେବଳ ମନର ମିଳନ ନୁହେଁ; ଅନ୍ତର-ମିଳନ । ଦାମ୍ପତ୍ୟ ଜୀବନର ମହତ୍ତ୍ୱ ଉଭୟେ ପରିପୂର୍ଣ୍ଣ ଉପଭୋଗ କରିଛନ୍ତି ।

ଗାଁ କଥା, ନିଜ ଘର କଥା, ପରିବାରର ସୁଖଦୁଃଖଠାରୁ ଆରମ୍ଭ କରି ସାହିତ୍ୟ ଚର୍ଚ୍ଚା, ଦେଶ ସେବା, ଓଡ଼ିଆ ଭାଷା ଓ ସଂସ୍କୃତିର ସୁରକ୍ଷା ସମ୍ବନ୍ଧରେ ମାନସିଂହଙ୍କ ଏକାନ୍ତ ନିଜସ୍ୱ ଆଦର୍ଶବାଦୀ ମତାମତ ଚିଠିଗୁଡ଼ିକୁ ସୁଖପାଠ୍ୟ କରି ତୋଳିଛି । ମାନସିଂହଙ୍କ ଦରଦୀ ମନ, କବି-ଜୀବନ ଓ ସାମାଜିକ ଚେତନା ପତ୍ରଗୁଡ଼ିକରେ ସୁସ୍ପଷ୍ଟ । ମାନସିଂହ ସାହିତ୍ୟକୁ ଯେଉଁମାନେ ଅଧ୍ୟୟନ ଓ ଗଭୀର ଅନୁଶୀଳନ କରୁଛନ୍ତି ଓ କରିବେ, ସେମାନଙ୍କ ଲାଗି ଏହି ଚିଠାଉମାନଙ୍କରେ ଯଥେଷ୍ଟ ଉପାଦାନ ରହିଛି । ସୂଚୀପତ୍ରକୁ ସହଜ କରିବା ଲାଗି ଚିଠାଉମାନଙ୍କର ଶିରୋନାମା ଦିଆଯାଇଛି । ମୂଳ ଚିଠିରେ କୌଣସି ଶିରୋନାମା ସ୍ୱଭାବତଃ ନଥିଲା ।

ସୂର୍ଯ୍ୟକାନ୍ତ ଦାସ

# ସୂଚୀପତ୍ର

ଡକ୍ଟର
ମାୟାଧର ମାନସିଂହ





ହେମଲତା ମାନସିଂହ

## ଚିଠାଉ

ଆସିବାର ଅଛୁ ଆଜ ଚିଠାଉ ତୁମ୍ଭର
ତେଣୁ ତୀବ୍ର ଉଦ୍‌ବେଗରେ ପ୍ରଭାତ ପ୍ରହର
କଟିଲାଣି ଗୃହିଁ ଗୃହିଁ । ଦେଇଛ କି ନାହିଁ ।
ହେ ପାଷାଣି ! ପତ୍ର ତାକେ ? ମୋ ଲାଗି କି ପାଇଁ
ହୁଏ ତବ ମୃଦୁବକ୍ଷ ତୁଷାର-କର୍କଶ
ବାଣଲେ ହେଁ ଥରେ ଥରେ ? ସେହୁ ସେ ଅଳସ,
ସେଇ ଲଜ୍ଜ୍ୟ ଅବହେଳା ! ମୋର ଅଭିମାନ
କେବେ ଆଉ ପହୁଁଞ୍ଚିବ ତବ ଅବଧାନ ?

ଏଇ ଆସେ ପୋଷ୍ଟମାନ୍—ସବୁର ଚିଠାଉ
ଧରି ସେ ଆସୁ ଛୁ ଏଣେ—ମୋର ହେଲେ ଆଉ
ଖଣ୍ଡେ ମାତ୍ର ।— ସେଇ ଖଣ୍ଡ ପ୍ରାଣ ଯାହା ମାଗେ
ପ୍ରତି-କଣା ସ୍ନାତ ଯାର, ତା'ର ଅନୁରାଗେ ।

ଏଇ ସତେ !— ଚୁମ୍ବେ ଆଗେ—ଖୋଲି ଦେଖେଁ—ଏଇ !
ପ୍ରିୟତମ ହସ୍ତଲିପି, ପ୍ରିୟ ବାର୍ତ୍ତା ନେଇ ।

ମାୟାଧର ମାନସିଂହ



# ଯଶ ଗୌରବ ତମରି ପାଦତଳେ

ମହାନଦୀ ଲଜ୍
କଟକ

ପ୍ରାଣର ଲକ୍ଷ୍ମୀ ମୋର,
ହୃଦୟର ଜ୍ୟୋତ୍ସ୍ନା ମୋର,
ସର୍ବସମ୍ପଦ ମୋର,

ମତେ ତମେ ଖରି ଦୁଃଖ ଦେଉଛ ଯେ ! ଏତେ ଦିନ ପରେ ତମର ସ୍ୱାସ୍ଥ୍ୟ କଥା ପତ୍ରରେ ଶୁଭ ଖବର ପାଇବି ବୋଲି ଆଶା କରିଥିଲି, ତମେ ଏମିତି କ'ଣ ଲେଖିଛ ! ବାସ୍ମାଣୀ, ତମେ ଜାଣୁନା ତମର ସ୍ୱାସ୍ଥ୍ୟ, ମୋର କି ସମ୍ପଦ । ତମେ ସୁସ୍ଥ-ସୁନ୍ଦର-ସବଳ ହେଲେ, ମୋର କୁଟୀର ସୁଖ-ଶାନ୍ତିରେ ହସିଉଠିବ । ତମେ ଯଦି ଦୁର୍ବଳ ଓ ରୁଗ୍‌ଣ ହୁଅ, ମୋର ଜୀବନ ଏକ ଅଭିଶାପ ହୋଇ ଉଠିବ । ସେଥିପାଇଁ ମୁଁ ତମ ସ୍ୱାସ୍ଥ୍ୟକୁ ଏତେ ଜଗିଥାଏ । ତମେ କିନ୍ତୁ ବଡ଼ ଅବାଧ ବାସ୍ମାଣୀ— ମୋ କଥା ଆଦୌ ଶୁଣୁନା । ମତେ ସନ୍ତୁଷ୍ଟ କରିବାକୁ ତମର ଆଦୌ ଇଚ୍ଛା ନାହିଁ ବୋଧହୁଏ । ତା' ନ ହେଲେ ମୋ'ର ଦେହକୁ ଏତେ ଅବହେଳା କରନ୍ତ କିପରି ? ତମେ ଦୈହିକ ପରିଶ୍ରମ କଲେ, ସ୍ୱାସ୍ଥ୍ୟର ଉନ୍ନତି ନିଶ୍ଚୟ ହୁଅନ୍ତା; କିନ୍ତୁ ତମେ ବୋଧହୁଏ ଆଦୌ କରୁନା । ପ୍ରଥମେ ଆପତ୍ତି କରୁଥିଲ ଯେ, ମୋ ଯୋଗୁ ତମ ସ୍ୱାସ୍ଥ୍ୟର ଉନ୍ନତି ହେଉନି । ଆଜି ବୋଧହୁଏ ସେ ଆପତ୍ତି ନାହିଁ । ମୁଁ ତ ବାରଂବାର କହୁଛି, ମୋ ଯୋଗୁ ତମର ଚିନ୍ତା କରିବାର କୌଣସି କାରଣ ନାହିଁ । ମୁଁ ଯାହିଁଥିଲେ ତମର । ମୋର ସମସ୍ତ ଯଶ-ଗୌରବ ତମରି ପାଦତଳେ ରଖି, ଏ ଜୀବନର ସାର୍ଥକତା ଲଭିବି କରିଛି ମୁଁ । ଜୀବନରେ ହୁଏତ ଘଟନାଚକ୍ରରେ ପଡ଼ି ପଦ-ସ୍ଖଳନ ହୋଇପାରେ । କିନ୍ତୁ ଶେଷ ଆଶ୍ରୟ ମୋର, ତମେ ବାସ୍ମାଣୀ । ତମର କୋଳ, ମୋର ଓ ମୋର ପୁତ୍ର କନ୍ୟାମାନଙ୍କର ଚରମ ଓ ପରମ ଆଶ୍ରୟ-ସ୍ଥଳ ବୋଲି ଜାଣି ରଖିବ । ଗତ ଜୀବନର ଇତିହାସ, ମୋ'ର ଚରିତ୍ରର ସ୍ଥିରତା ନଷ୍ଟ କରି ଦେଇଛି । ହୁଏତ, ସେହି ଦୋଷରୁ, ମୁଁ କେତେବେଳେ କେତେବେଳେ, ତମ ଆଡ଼ୁ ମୁହଁ ଫେରାଇ, ଅନ୍ୟ କା' ମୁହଁକୁ ଚାହିଁ ଦେଇପାରେ । କିନ୍ତୁ, ଶିଶୁ ଖେଳ ବୁଲି ଶେଷରେ ମା' କୋଳକୁ ଯେପରି ଫେରେ, ମୋ'ର ଚରିତ୍ରର ଶେଷ ଆଶ୍ରୟ ତମରି ସୁନ୍ଦର ମୁଖ, ବାସ୍ମାଣୀ । ମୋର ଏ କଥା ସବୁ ମନଗଢ଼ା-କଥା ବୋଲି ଧରିବନି ଏ ମୋ'ର ପ୍ରାଣର କଥା—ସ୍ପଷ୍ଟକଥା ।

ମୋ'ର ସ୍ନେହ, ଦରିଦ୍ରର ଦାନପରି, ଶୁଷ୍କ କୂପର ଶେଷ ଅଞ୍ଜୁଳା ଜଳ ପରି—ଏହାର କୌଣସି ମୂଲ୍ୟ ନାହିଁ ମୁଁ ଜାଣେ । କିନ୍ତୁ ମୋ'ର ତ ଏତିକ ଦେବାର ଅଛି, ମୁଁ ଆଉ ଅଧିକା ତମୁକୁ କ'ଣ ଦେବ ? ଅପଦାର୍ଥଟିଏ ବୋଲି ଅବହେଳ କାହିଁକ ? କିନ୍ତୁ ଅପଦାର୍ଥର ସ୍ନେହକୁ ଯଦ ତମେ ପ୍ରକୃତରେ ଚାହଁ, ତେବେ, ତମର ଚିନ୍ତା କରିବାର କ'ଣ ଅଛି ? ମୁଁ ତ ବହୁଦନୁ ତାହା ତମ ପଦତଳରେ ରଖିଦେଇ ସାରିଛି । ଯାହାଠୁ ଅଧିକ ଆଶ୍ୱାସନା ମୁଁ ଆଉ କ'ଣ ଦେଇ ପାରେ ? ମୋର ସ୍ନେହ ସମ୍ବନ୍ଧରେ, ତମେ ଆଶ୍ୱସ୍ତ ହୁଅ ବାସ୍ନାଣୀ । ସେ ସମ୍ବନ୍ଧରେ ତମେ କାହିଁକ ଭାବୁଛ ? ତମେ ଭାବିଲେ, ମୋ' ସ୍ନେହକୁ ଅପମାନ ହେଉଛି । ଆଉ, ତମେ ପ୍ରତିଦାନ ପାଇଁ ବା ଏତେ ଚିନ୍ତିତ କାହିଁକ ? ପ୍ରତିଦାନରେ ମୁଁ କିଛି ଚାହେଁ ନା—କେବଳ ତମୁକୁ ପରିପୂର୍ଣ୍ଣ ଭାବରେ ଚାହେଁ । ସେଥିପାଇଁ ତ ତମୁକୁ ଗଢ଼ିବାକୁ ମୋ'ର ଏତେ ପ୍ରୟାସ । ତମେ ସୁନ୍ଦରୀ, ଗୁଣବତୀ ଓ ସୁସ୍ଥା ହେଲେ—ସେ ତମର ନୁହେଁ, ଲାଭ ମୋର । ତମର ଦେହମନକୁ ମୁଁ ଯେ ଉପଭୋଗ କରିବ ! ତମର ରୂପକୁ ମୁଁ କବିତାରେ ଗ୍ରଥିତ କରି, ଅମର କରିବ; ତମର ବୁଦ୍ଧିକୁ ମୋ ବୁଦ୍ଧିର ସଙ୍ଗିନୀ କରି, ମୋ'ର ଶାର୍ଥ-ଯାତ୍ରା ସଫଳ କରିବ । ତମେ ଏଥିପାଇଁ ପ୍ରସ୍ତୁତ ହେବାକୁ ମୋର ଏତେ ଚେଷ୍ଟା, କିନ୍ତୁ ତମେ ବାସ୍ନାଣି, ଅବହେଳା କରୁଛ ? ଛି ! ତମେ ଜାଣିନା, ତମ ପ୍ରିୟ ମନରେ କି କଷ୍ଟ ଦେଉଛ !

କିଛି ଚିନ୍ତା କରନ । ସ୍ୱାସ୍ଥ୍ୟ ନିଶ୍ଚୟ ଭଲ ହେବ । ମୁଁ ତମୁକୁ ମୋଟା କରି-ଦେବ, ଦେଖିବ । ତମ ଚିଠିରୁ ଜଣାପଡ଼ିଲ, ତମେ ଭାରି ଲଜ୍ଜିତ ଏଥିପାଇଁ । କିଛି ଚିନ୍ତା, କିଛି ଲଜ୍ଜା ନାହିଁ ବାସ୍ନାଣି—ତମେ ଭାବଛ ସେଥିଲାଗି ମୁଁ ତମୁକୁ ଅନାଦର କରିବ ? ମୁଁ ଏତେ ନୀଚ ନୁହେଁ । ମୁଁ ପୁଣି ତମର ଅସୁବିଧା ସବୁ ମଧ୍ୟ ଜାଣେ । କିନ୍ତୁ ତମେ ମୁହଁ ଫିଟାଇ ଲେଖୁନା କାହିଁକ ? ମୁଁ ଯେ ତମର ସବୁକଥା ଜାଣିବାକୁ ଚାହେଁ—କେତେ ଖଣ୍ଡ ବହି ପଢ଼ାଠୁଁ ଆରମ୍ଭ କରି, କେତେ ମୁଣ୍ଡା ଭାତ ଖାଇବା ପର୍ଯ୍ୟନ୍ତ । ତମେ ବିସ୍ତୃତ ଭାବରେ ଲେଖ ନ ବାସ୍ନାଣୀ, ଲେଖ, ମୁଁ ଅନୁରୋଧ କରୁଛି, ଲେଖ । ମୁଁ ଶୁଣିବାକୁ ଭାରି ବ୍ୟଗ୍ର ।

ତମ ଲାଗି ମୋର ପରିବର୍ତ୍ତନ ଢେର୍ ହୋଇଛି । ମୋ'ର ଦେହର, ମୋ'ର ମନର, ମୋର ଚରିତ୍ରର—ସବୁ ଅଡ଼େ ପରିବର୍ତ୍ତନ ହୋଇଛି । ମୋର ଚିନ୍ତା ସ୍ଥିର ହୋଇ ଆସୁଛି । ଚିତ୍ତ ଶୃଙ୍ଖଳାବଦ୍ଧ ହୋଇ ଆସୁଛି, ହୃଦୟ କ୍ରମେ କ୍ରମେ ସମସ୍ତ ନୀଚତା ପରିତ୍ୟାଗ କରି ଉଚ୍ଚତର ସ୍ତରକୁ ଗତିକରୁଛି । ଆଜ ବସିବା-ଖାଇବାଠୁ ଆରମ୍ଭକରି ଯେ କୌଣସି କାର୍ଯ୍ୟ କରି ବସିଲେ ତମ କଥା ସଙ୍ଗେ ସଙ୍ଗେ ମନେ ପଡ଼ି ଯାଉଛି ଏବ ସେହି ସ୍ମୃତି, ମୋର ବର୍ତ୍ତମାନ ଜୀବନକୁ ଏକପ୍ରକାର ନିୟନ୍ତ୍ରିତ କରୁଛି ।

ମୋ ପାଇଁ କିଛି ଭାବନ । କେବଳ ନିଜକୁ ଉପଯୁକ୍ତ କରିବାରେ ଲାଗିଯାଅ । ତମ ପ୍ରେମର ସାର୍ଥକତା ସେହିଠାରେ । ଭାଇ-ଭଉଣୀଙ୍କ ସଙ୍ଗେ ମାଡ଼ ଗୋଳ କରି

ସମୟ ନଷ୍ଟ କରନା । ବର୍ତ୍ତମାନ ଦୀର୍ଘ ଅବକାଶ ପାଇବ—ତାକୁ ଯୋଗ୍ୟ କାମରେ ଲଗାଇବାର ବନ୍ଦୋବସ୍ତ କର । ଗୀତ ଭଲ ଭାବରେ ଆୟତ୍ତ କର, ସୂତା କାଟି ରୁମାଲ ବୁଣ, ଗାମୁଛା ବୁଣ, ଘର କାମ କର, ବୁଣାବୁଣିରେ ଖୁବ୍ ଅଭ୍ୟସ୍ତ ହୁଅ, ଖୁବ୍ ପଢ଼ । ତମର ତ ନାନା କଥା ଶିଖିବାର ଅଛି । ଯାହା ବା ଶିଖିଛ, ସେ ସବୁ ଅଧା-ଛଧା । ରୁମାଲଟିଏ ତ ଭଲ କରି ବୁଣି ଶିଖିନା—ଆଉ କହୁଛ କ'ଣ ? ଉଲ୍‌ରେ ଜମ୍ପର୍ ଓ ସ୍ୱେଟର୍ ବୁଣି ଶିଖିଛ ? —ତମେ କାଳେ ଚିଡ଼ିବ, ମତେ ଉପଦେଶ ଦେବାକୁ ତମକୁ ଡର ଲାଗୁଛି । କିନ୍ତୁ ମୋର ଯାହା କରିବାର ବା କହିବାର କଥା, ମୁଁ ତା' ନ କହିବି କାହିଁକି ? ଖାଲି ଚୁମ୍ବନ-ଆଲିଙ୍ଗନରେ ପ୍ରେମର ବିକାଶ ହୁଏ ନାହିଁ । ଏ ପ୍ରକାର ପ୍ରେମର ବିକାଶ, ହାଣ୍ଡି-ବାଉଁଶଙ୍କର ମଧ୍ୟ ହୁଏ । ଆମ ଜୀବନର ବିଶେଷତ୍ୱ କ'ଣ ? ତମେ, ତମର ଯୋଗ୍ୟତାରେ, ମୋର ଆଦର୍ଶ ନିକଟକୁ ମତେ ଯେତିକ ଅଗ୍ରସର କରାଇ ପାରିବ, ତମ ପ୍ରେମର ସାର୍ଥକତା ସେତିକ ବୋଲି ଜାଣିବ । ସେଥିପାଇଁ ଉପଯୁକ୍ତ ହୁଅ । ପ୍ରତି ମୁହୂର୍ତ୍ତରେ ନିଜକୁ ଗଢ଼ । ଚୁମ୍ବନ-ଆଲିଙ୍ଗନ ନେଇ ତ ଜୀବନ ଗଢ଼ି ହେବନି—ସେଥିପାଇଁ ଅନ୍ୟପ୍ରକାର ଯୋଗ୍ୟତା ଦରକାର । ସେ ଯୋଗ୍ୟତା ସଂଗ୍ରହ କର । ସେଥିରେ ତମର ଓ ମୋର, ଦୁଇଟି ଜୀବନ ଶାନ୍ତି ଓ ସଂଗୀତରେ ପୂର୍ଣ୍ଣ ହୋଇ ଉଠିବ ।

— ସେଠାରେ ପଢ଼ୁଥିବଣି । ତା' ପ୍ରତି କୌଣସି ଦୁର୍ବ୍ୟବହାର କରିବ ନା— ମୋ'ର ଅନୁରୋଧ । ମୋ ବିରୁଦ୍ଧରେ ଯଦି ସେ କିଛି କେବେ କହେ, ତେବେ କିଛି ମାତ୍ର ଉତ୍ତର ଦେବନି । ଆମେ ତା'ର ନିନ୍ଦା ପ୍ରଶଂସାର ବହୁ ଉପରେ । ସେମାନଙ୍କ ସଙ୍ଗେ ଲାଗି କି ଲାଭ ? ତମ ପ୍ରତି ଯଦି ଦୁର୍ବ୍ୟବହାର ସେ କରେ ତେବେ କିଛି ଚିନ୍ତା କରିବନି, ସ୍ଥିର ହୋଇ ସହିଯାଅ— ଖାତିର କରନା ସେଥିକି ।

ଘରୁ କିଛି ଚିଠି ପତ୍ର ପାଇନି । ଦଦାଙ୍କୁ ଏତେ କରି କହିଥିଲି, ଗଲେ ଅପା କଥା ସଙ୍ଗେ ସଙ୍ଗେ ଲେଖିବାକୁ, ତାଙ୍କର ଦେଖାଇ ନାହିଁ । କିନ୍ତୁ ମୋର କାହିଁକି ଭିତର ବିଶ୍ୱାସ ହେଉଛି, ଅପା ଭଲ ହୋଇସିବଣି । ତମେ କ'ଣ ତା'ଠୁ ଉତ୍ତର ପାଇନ ? ଲେଖିବ ।

ଲକ୍ଷ୍ମୀ ମୋର, ବାସ୍ତାଣି ମୋର, ଆସ, ତମର ସମସ୍ତ ଅବସାଦ, ଆଶଂକା, ଉତ୍କଣ୍ଠା ଗୋଟିଏ ନିବିଡ଼ ଆଲିଙ୍ଗନ ଓ ଗୋଟିଏ ଦୀର୍ଘଚୁମ୍ବନରେ ପୋଛି ନିଏ ।

ଚିଠିରେ ହେଲା କରନି । ଏତେ ସ୍ନେହ ପରେ ହେଲା କଲେ, ଧର୍ମ ସହିବନି । ଶୁଭ ଖବର ସବୁ ପାଇବି ବୋଲି ଆଶା କରେ । ମୋ ଧନ, ମୋ ସମ୍ପଦ, ମୋର ସବୁ—ଶୀଘ୍ର ଚିଠିଦେବ ।



ତମର ପ୍ରିୟ ।

## ସୁଖ ଦୁଃଖର ପରମ ସାଥୀ

ରସମୟୀ ଲକ୍ଷ୍ମୀ ମୋର,

ବାସ୍ୱାଣୀ, ଏତେ ବ୍ୟସ୍ତ କାହିଁକି ? ନିଜେ ଯେ ଦୋଷ କରିଛ, ସେ କଥା ମନରେ ଆସୁନି ପରା ? ଶେଷଥର ଯେଉଁ ଚିଠି ଲେଖିଲ, ଏମିତି ଚ'ପଟ ଗାରେଇ ପକେଇ ଦେଲ କାହିଁକି ? ଧନେ ଡେରି କଲ କାହିଁକି ? ବାରମ୍ବାର କହି କହି ମତେ ତମେ ମତେ କାହିଁକି ବିରକ୍ତ କରୁଛ ? ମୋର ରାଗ ନାହିଁ ? ମୋର ଅଭିମାନ ନାହିଁ ? ମୁଁ ସବୁ ସହିଯିବି ଭାବିଛପରା ? ସେ ଭାବନା ଭୁଲ । ବୁଝିଲ, ଆଉ ଏମିତି କେବେ କରିବ ନି—କଲେ ଏଇମିତି ଶାସ୍ତି ପାଇବ । ଏଇ ତ ମୋ' ହାତରେ ଏକମାତ୍ର ଅସ୍ତ୍ର—ଯାହା ମୁଁ ତମରି ପ୍ରେମ ବଳରେ ହସ୍ତଗତ କରିଛି ।

ମୋର ଦେହ ଓ ମନ ଭଲ ନାହିଁ । ଝାଡ଼ା ସଫା ହେଉନି—ମନ ବଡ଼ ବ୍ୟସ୍ତ ଲାଗୁଛି । ତେବେ ସାଧାରଣ ସ୍ୱାସ୍ଥ୍ୟ ବେଶ ଭଲ ଅଛି । ତମର ଶେଷ ଚିଠି ପାଇବା ପରେ, ମୋ ମନ ନିତାନ୍ତ ନୀରସ ଓ ଶୁଷ୍କ ହୋଇ ଉଠିଛି—ମୁଁ ଜାଣି ପାରୁନି କାହିଁକି । ତେଣୁ ହିଁ ଚିଠିପତ୍ର ଲେଖିବାର ଇଚ୍ଛା ନ ଥିଲା । ତମକୁ ଯେ କେବଳ ଶାସ୍ତି ଦେବାକୁ ଏପରି କରିଛି—ଏପରି ଭାବିବନି । ଏ ଦୁଃଖମୟ ଜୀବନରେ ତମେ ସବୁ-ବେଳେ ସରସତା ପାଇବ କୁଆଡ଼ୁ ? ନାନା ଦୁଶ୍ଚିନ୍ତାରେ ମନ ମ୍ରିୟମାଣ ହୋଇ ଉଠୁଛି—ମୋର ଦୁଃଖ ସୁଖର ପରମ ସାଥୀ ତମେ, ଦୂରରେ ରହିଲ; ସେ ଦୁଃଖ ବୁଝିବ କିଏ କହେମ ? ତମେ ବୁଦ୍ଧିମତୀ – ତମେ ମୋର ଦୁଃଖ ବୁଝିପାରି ମତେ କ୍ଷମା ଦେବ । ଭାବିବନି ହେମ, ମୁଁ ନିର୍ମମ, ମୁଁ ନିଷ୍ଠୁର, ମୁଁ ଅମନୁଷ୍ୟ । ଏ ଜୀବନ ମୁଁ ଚିରଦିନ ପାଇଁ ତମ ପଦତଳେ ଅର୍ପଣ କରିଛି । ମୋର ସ୍ଖଳନ ହେଲେ, ମୋର ଅବନତି ହେଲେ, ତମେ ଦେଖି, ମତେ ଉଠେଇ ନିଜର କରିବ । ସେ ଶକ୍ତି ତମର ଅଛି । ସେ ଶକ୍ତିରେ ମୋର ବିଶ୍ୱାସ ଅଛି ବୋଲି ମୁଁ ତମ ଉପରେ ଯଥେଚ୍ଛା ଅତ୍ୟାଚାର କରୁଛି ପିନା ।

ତମେ ଲେଖିଛ 'ପାଖରେ ପାଇଲେ କ'ଣ କରନ୍ତି ଦେଖନ୍ତ'-କ'ଣ କରନ୍ତ ରସମୟୀ ? ମୁଁ ଜାଣେ ତମେ କିଛି କରି ପାରନ୍ତନି । ତମେ ନିତାନ୍ତ ଦୁର୍ବଳ କରି

ପଡ଼ୁଛ ନିଜକୁ ମତେ ସ୍ନେହ ଦେଇ । ତମେ ଶାସନ କରିବାକୁ, ନିଜର ଅଧିକାର ନିଜେ ବୁଝିନେବାକୁ, କେତେ ଥର କହିଲି—କରୁନା କାହିଁକି ? ତମଠୁ ମୁଁ ଏବିଷୟରେ ବହୁତ ଆଶା କରିଥିଲି । ଦେଖୁଛି, ମତେ ଦୟାକରି ତମେ ନିଜର ଶକ୍ତିକି ଉପେକ୍ଷା କରୁଛ । ତମେ ଜାଣନି, ତମର ତିରସ୍କାରକୁ ମୁଁ କେତେ ଭଲ ପାଏ । ତମେ ଏ ଚିଠିରେ ମତେ ତିରସ୍କାର ନକରି, ଏମିତି ବିନୀତ ହୋଇ ଲେଖିଛ କାହିଁକି ? ସେ ସବୁ ଯେ ତମର ଜନ୍ମଗତ ଦାବୀ—ତାକୁ ବ୍ୟବହାର କରୁନା କାହିଁକି ?

ଏବେ ମୁଁ ଅନବରତ ତମକୁ ନେଇ କିପରି କୁଟୀର ରଚନା କରିବି, ତାହାହିଁ ଭାବୁଛି । ତମେ ଶେଷ ଚିଠିରେ ଯେପରି ଭାବିଛ ସେଇପରି ଭାବରେ ବସବାସ କରିବାକୁ ମୋର ନିବିଡ଼ ଇଚ୍ଛା । ତେବେ ମୁଁ ତ ଆଉ କୃଷକ ହୋଇ ପାରିବିନି । ସେ ଅଭ୍ୟାସ ମୋର ନାହିଁ । କିନ୍ତୁ କୃଷକ ଯେଉଁ ରୀତିରେ ବଞ୍ଚେ ଆମେ ମଧ୍ୟ ସେହି ରୀତିରେ ବଞ୍ଚିବା । ଆମେ ଯେତେଦୂର ସମ୍ଭବ, ଚାକର ରଖିବାନି—ରଖିଲେ ମଧ୍ୟ, ସେ ଆମର ସମସ୍ତ ଉପଭୋଗର ସହଚର ହେବ ଯେପରି । ନିଜ ଜମିରେ ଖାଦ୍ୟ, ପେୟ, ପରିଧାନ —ସବୁ ଉତ୍ପାଦନ କରି, ଅତ୍ୟନ୍ତ ପରିତୋଷରେ ଜୀବନକାଟିବା ବୋଲି ମୋର ବିଶ୍ୱାସ । ତମେ ସୂତା କାଟୁଥିଲ ପରା—ଏବେ ସାରିମତ କାଟ । ତମର ଚରଖା ଅଛି ? ମୁଁ ଏଠି ଭଲ ଚରଖା ଖୋଜିବି । ସେଠି ମିଳିବ ଯଦି ଲେଖ । ମୁଁ ଟଙ୍କା ପଠେଇବି । ମୁଁ ଏବେ ଯଥାସମ୍ଭବ ଖଦଡ଼ ପରିଧାନ କରିବାକୁ ମନସ୍ଥ କରିଛି । ନିକଟରେ ଖଣ୍ଡେ ସ୍ୱଦେଶୀ—ପତ୍ରିକା ପଢ଼ୁ ପଢ଼ୁ, ହଠାତ୍ ମୁଁ, ବିଦେଶୀ ବା ମିଲ୍-ଲୁଗା ପିନ୍ଧି, କି ପାପ କରୁଛି ତାହା ଅନୁଭବ କଲି । ସେଇ ସମୟରୁ ଠିକ୍ କରିଛି, ଯେତେ ଦୂର ସମ୍ଭବ, ମୁଁ ବିଦେଶୀ ବର୍ଜନ କରି ସ୍ୱଦେଶର ଲକ୍ଷ ଲକ୍ଷ ଦରିଦ୍ର—ନରନାରୀଙ୍କୁ ଯଥାସାଧ୍ୟ ସାହାଯ୍ୟ କରିବି ।

ତମେ ସେଠାରୁ ଆସିବ ? ମୁଁ ତ ତମର ବାପ-ଘରର ସୁଖ କେବେହେଲେ ତମକୁ ଦେଇପାରିବି ନି । ତମକୁ ଡେରି ନିଜେ ଯାଇ ଆଣିବାକୁ ମୋର ମନ ହେଉନି । ତମେ ନିଜେ ଆସିବାର ଥିଲେ ଆସ । ଆସିଲେ ମୁଁ ମୋ କୁଟୀର ଦ୍ୱାରରେ ଠିଆ ହୋଇ ନିବିଡ଼ ଆଶ୍ଳେଷରେ ଘରକୁ, ଘରର ଲକ୍ଷ୍ମୀକି ଟାଣି ନେଇଯିବି । ସେଠିକି ଯିବାକୁ ମଧ୍ୟ ମୋର ଆଦୌ ଇଚ୍ଛା ହେଉନି । ତମେ ସେଠୁ ଏକା ଆସିବାର ସାହସ ସଞ୍ଚୟ କର । ମୁଁ ଓ ମୋର ଅନ୍ୟ ଯାହା କିଛି, ସବୁ ତ ତମର—ତମେ ନିଜେ ଆସି ଅଧିକାର କର । ମୁଁ ଡାକିବାକୁ ଯିବି କାହିଁକି ?

ଆମର ଶେଷ ପରୀକ୍ଷା ଏଇମାସ ୨୮ରେ । ୪ଦିନ ହେବ—ଅର୍ଥାତ୍ ମାସ ଶେଷ ଦିନ ମୁଁ ସ୍ୱାଧୀନ । ଏପ୍ରିଲ ପ୍ରଥମ ସପ୍ତାହରେ ମୁଁ ଏଠାରୁ ବିଦାୟ ନେଉଛି । ଏ ସହର ଜୀବନ ଏତେ ତିକ୍ତ ଲାଗିଲାଣି ଯେ କ'ଣ କହିବି । ଖୁବ୍ ସମ୍ଭବତଃ

ବାଣପୁର ଯିବ । ସେଠି ଅବସ୍ଥା ଦେଖି ବ୍ୟବସ୍ଥା କରିବାକୁ ହେବ । ସେ କଥା ପରେ ଦେଖିବା । ମୋର ବିଶ୍ୱାସ, ଏହିଠାରୁ ମୋ'ର ଜୀବନ ଦୁଃଖ ମୁକ୍ତ ହେବ । ମନେ ସେହିପରି ବୋଧ ହେଉଛି । ତମକୁ ପାଖରେ ପାଇଲେ, ମୋର ଦୁଃଖ କ'ଣ କରିବ ହେମ ? ତମେ କେବେ ଆସୁଛ ? ଆସିବାକୁ ଇଚ୍ଛା ଅଛି ଏ ଦରିଦ୍ର ପାଖକୁ ?

ଆଶାକରେ ତମର ସ୍ୱାସ୍ଥ୍ୟ ଭଲ ଅଛି । ଔଷଧ ଖାଉଛ ? ମୋଟା ହଉଛ ? ବାଳ କମିତ ଅଛି ? ସବୁ ଲେଖ । ମନେ ହେଉଛି ତମ୍ଭକୁ ମୁଁ ବହୁଦିନ ଧରି ଦେଖିନି—କେବଳ ଗୋଟିଏ ସୁଖ-ସ୍ୱପ୍ନ ଯେପରି କଟି ଯାଇଛି, ଏଇପରି ଲାଗୁଛି ଏଇ ପ୍ରଖର ବସନ୍ତରେ, ଏ ଦେହ ବିରହାନଳରେ ଜଳି ଉଠୁଛି ଲକ୍ଷ୍ମୀ । କେବେ ଦେଖିବ ? ଦେଖିବ ବୋଲି ଭରସା ଯେପରି ନାହିଁ । ମତେ ରାଗ କରିବନି । ଏ ଅଧମଟା ଉପରେ କ୍ରୋଧ କରି ଲାଭ କ'ଣ ? ତମେ ଚାଉ-ଚରିତ କଣ ଜାଣିନ ଦେଇ । କ୍ଷମାକର—ତମର ଉଦାର ମନକୁ କଳୁଷିତ କରନା । ଏ ପତ୍ର ପାଇ ଶୀଘ୍ର ଚିଠି ଦେବ । ମୁଁ କା'ର ? ଏ ଉତ୍ତର ତମେ ଦେବ—ମତେ ଶାସନ କରିବାର, ଚଳାଇ-ବାର ଲୋକ ତ ତମେ—ତମେ ଅଭିମାନ କଲେ ଚଳିବ ?

× × × × ×



# ଏକମାତ୍ର ଆଶାର ପ୍ରଦୀପ

C/o ପରମାନନ୍ଦ ରଥ
ଆର୍ଟସ୍ କଲେଜ୍
କଟକ

ପ୍ରାଣର ହେମ,

କେହି ଯଦି ପଚାରନ୍ତି ମୁଁ କୁ'ଠି ଅଛି, କ'ଣ କରୁଛି, ତମେ ବିଶେଷ କିଛି କହିବନି; କେବଳ କହିବ କଟକରେ ସାଙ୍ଗମାନଙ୍କ ପାଖରେ ଅଛି। ମୁଁ ତଳେ ଯାହା ଲେଖିବି ସେ ଖବର କେବଳ ତମ ପାଇଁ।

ତମେ ମୋ ଚିଠି ଅପେକ୍ଷା କରିଥିଲ? ମତେ ବିଶ୍ୱାସ କରିବ ହେମ, ଆସିଲା ଦିନୁ ତମେ ମୋର ସ୍ୱପ୍ନ ହୋଇଛ। ଏ ଭିତରେ ତମୁକୁ ମନେ ପକାଇ ମୁଁ ବହୁଥର ମନପ୍ରାଣ ଦେଇ କାନ୍ଦିଛି। ସେ କାନ୍ଦ, ସେ ଅଶ୍ରୁ ଅନ୍ୟ କେହି ଦେଖି ନାହିଁ। ଜଗତରେ ଅନ୍ତର୍ଯ୍ୟାମୀ ପୁରୁଷ ଯଦି କେ ଥାଏ, ତେବେ ନିଶ୍ଚୟ ସେ ଅଶ୍ରୁ ତାର ପଦତଳକୁ ଉଷ୍ମ କରି ଦେଇଥିବ। ତମେ ମତେ ଏପରି ଭାବରେ ଆବୃତ କରି ରଖିଛ ଯେ, ପ୍ରତିପଦରେ ତମେ ମନେ ପଡ଼ୁଛ—ପ୍ରତିପଦରେ ମନେ ହେଉଛି ତମେ ଯେପରି ମୋ କାନ୍ଧରେ ହାତ ରଖି ଦୁଃଖ ଯାତ୍ରାର ସାଥୀ ହୋଇଛ।

ସେଠାର ପ୍ରାଣ-ଘାତିନୀ ଅପମାନରୁ ଫେରି ଆଉ ଘରକୁ ଯିବାକୁ ମନ ହେଲାନି। କୌଣସି ମତେ ଏଠାରେ ରହି ନିଜର ବ୍ୟୟ ନିଜେ ଅର୍ଜନ କରି ପଢ଼ାପଢ଼ି କରିବାକୁ ମନସ୍ଥ କରିଛି। ଏଠାରେ ଟିକିଏ ପ୍ରତିଷ୍ଠିତ ହୋଇଗଲେ ତମୁକୁ ନେଇ ଆସି କଂଗ୍ରେସରେ ଯୁଡ଼ି ଦେବି। ସେଠାରୁ ଫେରି ଜୀବନରେ ଯାହା କରି ନ ଥିଲି ତାହା କରିଛି—ବହୁ ଲୋକଙ୍କର ଦ୍ୱାରସ୍ଥ ହୋଇ ଜୀବିକା-ଭିକ୍ଷା କରିଛି। ଏ ପର୍ଯ୍ୟନ୍ତ ନିରାଶା ଛୁଟିନି। ମତେ ଅପେକ୍ଷା କରିବାକୁ କୁହା ହୋଇଛି। ପରେ ସବୁ କଥା କହିବି ଓ ଲେଖିବି। ପ୍ରଥମେ ଯେତେବେଳେ ନିରାଶ ହୋଇ ଫେରେ ମୁଁ କଟକ ବଜାରରେ ଠିଆ ହୁଏ, ବିଶ୍ୱାସ କର ହେମ, ମୋ ଆଖିରେ ଲୁହ ପୂରି ଆସେ। କୌଣସି ମତେ ନିଜକୁ ସଂଯତ କରି ପୁଣି ଯାତ୍ରା ଆରମ୍ଭ କରେ। ପ୍ରଥମେ ଦୁଇ ତିନିଦିନ ଦୌଡ଼ି

ଦୌଡ଼ି ମୁଁ ଏକାବେଳକେ ଅବଶ ହୋଇ ପଡ଼ିଲି, ମୋର ସ୍ୱାସ୍ଥ୍ୟ ଏକାବେଳକେ ଭାଙ୍ଗି ଯାଇଛି । ଏବେ ଗୋଟିଏ ଔଷଧ ଖାଇ ଏଠାରେ ବିଶ୍ରାମ ନେଉଛି । ଆଶା କରୁଛି ଶୀଘ୍ର ପ୍ରତିଷ୍ଠିତ ହୋଇଯିବ ।

ଧନ ମୋର ଶୀଘ୍ର ଲେଖିବ କପର ଅଛ । ଏ ସମସ୍ତ ଦୁର୍ଦ୍ଦଶା ମଧ୍ୟରେ ଏକମାତ୍ର ଆଶାର ପ୍ରଦୀପ ଜାଳିରଖିଛ ତୁମେ । ମୋର ବହୁତ ଶପଥ, ତୁମେ ଆଉ ମତେ ଅବିଶ୍ୱାସ କରିବ ନାହିଁ । ଏଇ କେତେ ଦିନ ହେଲା କେବଳ ଭାବୁଛି, ମୁଁ ଅଧମ କି ରତ୍ନ ଲାଭ କରିଛି । ଯେଉଁ ବିଧାତା ତୁମକୁ ଦାନ କରି ଦେଇଛି, ସେ ନିଷ୍ଠୁର ବୋଲି ମୁଁ କାହିଁକି କହିବି ? ତୁମକୁ ପାଇ ମୋର ଦୁଃଖ ମଧୁର ହୋଇ ଉଠିଛି । ବର୍ତ୍ତମାନ ମୋର ଜୀବନର ଏକ କର୍ତ୍ତବ୍ୟ ତୁମକୁ ସୁଖୀ କରାଇବା । ସେଥି-ପାଇଁ ମୁଁ ଏ ଜୀବନକୁ ଟିକି ଟିକି କରି ମୃତ୍ୟୁକୁ ଦେଇଦେବି । ଜୀବନର ସକଳ ଗୌରବ ତୁମ ପଦତଳେ ଥୋଇ ମୁଁ କେବଳ ତୁମର ପ୍ରଣୟ ଭିକ୍ଷା କରିବି ।

ଏଠାରେ ବନ୍ଧୁମାନଙ୍କ ଆଦର ମଧ୍ୟରେ ଆଶ୍ରୟ ନେଇଛି । ଏଠାରେ ମୁଁ ବିନାଖର୍ଚ୍ଚରେ ଓ ବିନା ଅପମାନରେ କର୍ଣ୍ଣସାର ଉଦରକୁ ଅନ୍ନ ଦେଇପାରେ । ଏଇ ଦରିଦ୍ର-ବନ୍ଧୁମାନଙ୍କ ସଙ୍ଗରେ ଯେତେ ମିଶୁଛି ମୁଁ ସଂସାରକୁ ସେତିକି ଚିହ୍ନୁଛି । ଜାଣୁଛି, ଅର୍ଥାଭାବ ମୋର ଏକା ନୁହେଁ, ଦାରିଦ୍ର୍ୟ ସମସ୍ତଙ୍କୁ ଘେରି ରହିଛି । ମୋର କେତେକ ବନ୍ଧୁଙ୍କ ଦାରିଦ୍ର୍ୟ ଭିତରେ ବଢ଼ିଛନ୍ତି ତା ତୁମକୁ ଦିନେ କହିବି ।

ତୁମକୁ ଦେଖିବା ପାଇଁ ମନ ବରାବର ବ୍ୟାକୁଳ ହୋଇ ଉଠୁଛି । ଟଙ୍କା ପଇସା ହେଲେ, ଶୀଘ୍ର ବାରିପଦା ଯାଇ ତୁମକୁ ନେଇ ଆସିବି । ଦେଖାଯାଉ ଭଗବାନ କେଉଁ ଆଡ଼କୁ ଯାତ୍ରା କରାଉଛନ୍ତି ।

ମୋର ଲକ୍ଷ ଲକ୍ଷ ଚୁମ୍ବନ ଓ ନିବିଡ଼ ଆଲିଙ୍ଗନ ଗ୍ରହଣ କରିବ । ଏଠାରେ ମୁଁ କେବଳ ତୁମର ପ୍ରଶଂସାରେ ଅନେକ ସମୟ କଟଉଛି । ଶୁଣିଲେ ଲୋକେ ଆଶ୍ଚର୍ଯ୍ୟ ହେଉଛନ୍ତି, ୧୪ ବର୍ଷର ଟୋକି ଏପରି କରିପାରେ ଓ କହିପାରେ ! କେବେ ସ୍ୱାଧୀନ ହେବି, ଶ୍ରେଷ୍ଠ ସଂସାରଟିଏ ଗଢ଼ିବି, ତୁମକୁ ସେଇ ସଂସାରର ରାଣୀ କରିବି । କେବେ ପୁଣି ତୁମେ, ମୋର ବକ୍ଷରେ କୋମଳ ଗଣ୍ଡ ନିହିତ କରି ଅଭିମାନ କରିବ । କେବେ ପୁଣି ତୁମେ ପଣତ କାନି ଘୋଡ଼ାଇ ଦେଇ ମତେ କୋଳରେ ଶୁଆଇ ଦେବ । କେବେ ପୁଣି କଳି-ତକରାଳ ଓ ତା'ର ମୀମାଂସା ହେବ । କେବେ ପୁଣି ମୁଁ ଚୁମ୍ବନ ନ ଦେଲେ ତୁମେ ରାଗ କରିବ ! ପୁଣି ମୋର ନିବିଡ଼ ଆଲିଙ୍ଗନ ଓ ଚୁମ୍ବନ ଗ୍ରହଣ କରି । ଗଡ଼ି ପାଇ ଗଡ଼ି ଦେବ—ଅଶ୍ରୁସ୍ୱ । ହେଲା କଲେ ଆଉ ଦେବନି ।

ହାଉ ଗୁଡ଼, ହାତ ଗୁଡ଼—ମୁଁ ରହେ । ଇତି ।

ତୁମର ପ୍ରିୟ ।

## ପ୍ରଣୟ ଜଳରେ ଉତ୍ପ୍ଲାବିତ

ପତିତପାବନୀ ଗଙ୍ଗା ମୋର,

ବାଗ୍ବାଣୀ, ଯାହା ଅପମାନ, ସେ ସବୁ ମୋର ଧନ । ମୁଁ ସେସବୁ ଅର୍ଜିଛି । ତମେ ତ ସାବିତ୍ରୀ, ତମର ସେ ସବୁରେ କ'ଣ ଅଛି ? ଲୋକେ କ'ଣ ସବୁବେଳେ ସବୁକଥା ବୁଝନ୍ତି ? ଦିନ ଆସିବ, ଯେତେବେଳେ ସେଇମାନେ ଆମ ସ୍ନେହର ନିବିଡ଼ତା ବୁଝିପାରିବେ । ଅବଶ୍ୟ ମୋ ଜୀବନରେ ଯେପରି ଘଟଣା ଘଟିଛି ସେଥିରେ ଲୋକଙ୍କର ଭିନ୍ନ ଧାରଣା କରିବା ସ୍ୱାଭାବିକ । କିନ୍ତୁ ଲୋକେ ଯାହା ଭାବନ୍ତୁ, ଆମ ପ୍ରାଣରେ ପରସ୍ପର ମଧ୍ୟରେ ଯେ ଅମୃତ ସ୍ରୋତ ପ୍ରବାହିତ ହେଉଛି, ସେଇ ଆମ୍ଭମାନଙ୍କୁ ସୁଖୀ ଓ ଭାଗ୍ୟବାନ୍ କରେଇବ । ତମେ ତମର ପବିତ୍ର ପ୍ରେମ କଳ୍ପତରୁର ସ୍ନିଗ୍ଧ ଛାୟାରେ ଏହି ପ୍ରାଣକୁ ସଞ୍ଚାର କରିଦିଅନ୍ତି । ମୁଁ ତମକୁ ବାରମ୍ବାର ସେହି କଥା କହି ଆସିଛି । ତମକୁ ଅଶ୍ରଦ୍ଧ ଦେବାର ନ ଦେବାର କଥା ମୋ'ଠି ଆଦୌ ଉଠୁନି । ନଦୀର ବନ୍ୟା ସ୍ରୋତ ଯେପରି ଅଯାଚିତ ଭାବରେ କୂଳଭୂମିକୁ ଉର୍ବର କରିଯାଏ, ତମେ ସେହିପରି ମୋ ଜୀବନର ଦୁଇକୂଳକୁ ପ୍ରଣୟ-ଜଳରେ ଉତ୍ପ୍ଲାବିତ କରି ଉର୍ବର କରିଦିବ । ତମକୁ ନାହିଁ କରିବାର ଅଧିକାର ବି ମୋର ନାହିଁ । ମୋ ଜୀବନର ସମସ୍ତ ସଫଳତା ତମରି ହାତରେ । ଜଗତର ଅପମାନକୁ ଭ୍ରୂକ୍ଷେପ ନ କରି ମତେ ନିଜର କରି, ଗଢ଼ିଯାଅ । ହେ ପରମେଶ୍ୱରୀ ମୋର, ମତେ ଏପରି ଭାବରେ ଚଳାଅ ଯେପରି ମୋ ଲାଗି ମୋ ଲକ୍ଷ୍ମୀ ଆଖିରୁ କେବେହେଲେ ଲୁହ ଲୋତକ ନ ଗଡ଼େ । ମୋର ଜାହ୍ନବୀ ଯେତେ ଦିନ ମୋ କୁଟୀରରେ ପ୍ରବାହିତ ହେଉଥିବ, ମୁଁ ଆଶାକରେ ମୋର ଶୁଚିତା କେହି ଭାଙ୍ଗି ପାରିବେନି । ଦେଖାଯାଉ ।

ମୋର ପରୀକ୍ଷା ଆଉ ୬ ଦିନ ରହିଲା । ମୁଁ କିଛି ପଢ଼ିନି । ଏଥିରେ ତାଙ୍କ ଲାଗି ପ୍ରବନ୍ଧ ଲେଖିବି କିପରି ? ଏ ପତ୍ର ପାଇଲା ଦିନ ହିଁ ତାଙ୍କ ପାଖକୁ ଲେଖ ଯେ, ମୋର ପରୀକ୍ଷା ସରିବାଯାଏ ସେ ଅପେକ୍ଷା କରନ୍ତୁ । ହୁଏତ ଅପ୍ରେଲ ୧୫ ତାରିଖ ଭିତରେ ପଠାଇ ପାରେ ।

ମୁଁ ବ୍ରହ୍ମଚର୍ଯ୍ୟ ବ୍ରତସ୍ୱରେ ବନ୍ଧପରିକର । ନିଜକୁ ଝସ୍ମ କରିବାକୁ ମୋର ଦିନେ ହେଲେ ଇଚ୍ଛା ନାହିଁ । ବେଳେ ବେଳେ ଭାବେ ହେମ ପରି ପତ୍ନୀ ପାଇ, ମୁଁ ଯଦି

ନିଜକୁ କଷ୍ଟ କରି ଶ୍ରେଷ୍ଠ ହୋଇଗଲି, ତେବେ ହେଲା କ'ଣ ! ବେଳେ ବେଳେ ତମର ଲୋଭନୀୟ ଅଙ୍ଗପ୍ରତ୍ୟଙ୍ଗ କଥା ମନେ ପଡ଼େ । ମନ କମିତି ହୁଏ, ଉତ୍ତେଜନା ହୁଏ । ତମକୁ ସବୁକଥା ଖୋଲି କହୁଛି ସେଥିପାଇଁ । ଆଶାକରେ ତମେ ଚନ୍ଦ୍ରବଦନ— ମତେ କ୍ଷମା ଦେବ । ମୁଁ ସବୁବେଳେ ନିଜକୁ ସାବଧାନ କରୁଛି—ଯେତେଦୂର ପାରୁଛି, ନିଜକୁ ଦମନ କରୁଛି । ଆଉ କ'ଣ କରିବ ? ମତେ ସାହାଯ୍ୟ କର— ଦେଖା ହେଲେ, ମତେ ସଂଯତ ରଖାଅ ।

ଦଦା ତ ତମକୁ ଏଇକ୍ଷଣି ଆଣୁ ନାହାନ୍ତି—ଏବେ ଆଣିବା ଲାଗି ଦିନ ଠିକ୍ କରି ପରେ ଆଣିବେ । ଆଉ, ତମକୁ ଦେଖ ଯେ ଠିକ୍ କନେଇ—ସିମିତି ପୁଣି ବାଉପଦା ପଳେଇବାକୁ ଗୋଡ଼ କାଢ଼ି ଠିଆ ହେବ—ସେତେବେଳେ ପାତିବ୍ରତ୍ୟ ଦେଖିବ । କା ଆଗରେ ଗୁହାରି କରିବ ?

ଭଲ ଅଛ ? ମା ମୋର, ସୁସ୍ଥ ସବଳ ହୋଇ ଉଠ ଶୀଘ୍ର । ଏ ମାସରେ ରଜୁ ବେଳେ, ଶାସ୍ତ୍ରୀୟ ମତରେ ଚଳିବ, ମୋ ରାଣ । କେବେ ଅମାନିଆ ହେବନି । ମୋର ଅତ୍ୟନ୍ତ ଅନୁରୋଧ ।—ମୋର ବିଶ୍ୱାସ, ଏଇ ଯୋଗୁ ତମ ଦେହ ଖରାପ ହେଉଛି । ମୋର ଅତ୍ୟନ୍ତ ଅନୁରୋଧ ମୋ କଥା ମାନ—ପୁରାପୁରି ଶାସ୍ତ୍ର କଥା ମାନିବ । ଗାଁକୁ ଆସିଲାବେଳେ, ମୋଟାମୋଟି ନ ହୋଇଥିଲେ, ଦେଖିବନିକ କ'ଣ କରିବ ।

ପ୍ରାଣର ପରମ ଦୋସର ମୋର, ପାପତାପମୟ ଜୀବନର ଜାହ୍ନବୀ ଧାର ମୋର,

× × × ×

ଶୀଘ୍ର ଚିଠି ଦିଅ—
ଇତି,
ତମର
ପରମ ପ୍ରିୟ ।



# ଅନ୍ତରର ମୁଗ୍‌ଧ ବାଣୀ

ଏକାନ୍ତ ପ୍ରାଣର ଲକ୍ଷ୍ମୀ ମୋର,

ପ୍ରାଣର ସର୍ବସ୍ୱ ମୋର,

ମାତୃ-ଦାକ୍ଷିଣ୍ୟ ଲକ୍ଷ୍ମୀ ମୋର,

ଗର୍ବର ଗ୍ରୀବର ପାଗଳ ମୋର,

ବାସ୍ମାଣୀ, ବଡ଼ ବ୍ୟସ୍ତ ମୁଁ । କିଛି ପଢ଼ିନି, ଫେଲ୍ ହେବ ବୋଲି ବଡ଼ ଆଶଂକା । ଏବେ ଟିକିଏ ସେଥିଲାଗି ବ୍ୟସ୍ତ । ସେଥିଲାଗି କାଲି ଚିଠି ଦେଇ ପାରିଲି ନି ।

ଦଦା ଏପର୍ଯ୍ୟନ୍ତ କାହିଁକି ଆସିଲେ ନି, କ'ଣ କଥା ହେଲା ଲେଖ । ତୁମେ ତ ଏଇନେ ଆସୁନ—ଏମିତି ହେଉଛ କାହିଁକି ? ତମେ ଗଲାବେଳକୁ ମୁଁ ଗାଁକୁ ଯାଇଥିବି । ଅପା ବୋଧହୁଏ ଆସିଥିବ । ମୁଁ ନ ଗଲେ ତମୁକୁ ସାଧ୍ୟ ବନେଇବ କିଏ ?

ଓଃ, ତମେ କମିତି ଲେଖୁଛ ! ମୁଁ ତ ତମ ଲେଖା ଦେଖି ମୁଗ୍‌ଧ ହୋଇ ଯାଉଛି । ତମେ କାହିଁକି ଲେଖା ଅଭ୍ୟାସ କରୁନ କହିଲ । କେତେଥର କହିଲିଣି, ଶୁଣୁନା କାହିଁ ? ତମର ସତ୍ୟ ଉପଲବ୍‌ଧି କରିବାର ଏକ ବିଚିତ୍ର ଶକ୍ତି ଅଛି ଦେଖୁଛି । ବିବାହ ଦିନରୁ କଥା କଥାରେ ମୁଁ ବରାବର ଦେଖି ଆସୁଛି । ମୁଁ ଯାହା, ବହୁତ ପଢ଼ି ଓ ବହୁତ ଅନୁଭବ କରି ସିଦ୍ଧାନ୍ତ କରିଛି, ତମେ, ଅଜ୍ଞାତସାରରେ, ସେ ସତ୍ୟ, କଥା କଥାରେ କହି ପକାଇବାର ମୁଁ ଅନେକ ଥର ଦେଖିଛି । ତମର ସାହିତ୍ୟିକ ରୁଚି ଓ ସମାଲୋଚନାରେ ମୁଁ ତ ଅନେକ ସମୟରେ ଆଶ୍ଚର୍ଯ୍ୟ ହୁଏ । ତମେ କାହିଁକି ଲେଖା ଅଭ୍ୟାସ କରୁନ କହିଲ ! ଭାବିବନି ମୁଁ ତମୁକୁ ଖୁସି କରିବା ଲାଗି ଏ ସବୁ କହୁଛି—ସେ ମାଟଚଟା ମୋ'ଠି ନାହିଁ । ମୁଁ ଅନ୍ତରର ମୁଗ୍‌ଧ ବାଣୀ କହୁଛି ମାତ୍ର । ଏଥରର ଚିଠିରେ ଅନେକ ସତ୍ୟକଥା ଲେଖିଛ—ଅବଶ୍ୟ ସେଥିରେ ଅପରିପକ୍ୱତା କିଛି ଅଛି—ତଥାପି, ତମ ବୟସର ପିଲା ପକ୍ଷରେ ସେ ସବୁ ଆଶ୍ଚର୍ଯ୍ୟର କଥା । ବାସ୍ତବିକ ଏପରି ବାଳିକା ଭାଗ୍ୟବାନ୍‌ମାନଙ୍କୁ ହିଁ ମିଳେ । ତମେ ଲେଖିବ କି ?

ତମେ ମୋଟା ହେବନି ? ହଉ, ଗାଁକୁ ଆସ, ମୋଟା ନ ହେଲେ ଯାଏଁ ତମକୁ ଘରେ ପୂରେଇ ଦେବନି । ସେତେବେଳେ ?—ଏଥର ଭାରିବେଳେ ମୋ କଥା ମାନିବ—ମୋର ଆଦେଶ, ସ୍ୱାମୀର ଆଦେଶ ନୁହେଁ—ପରମ ପ୍ରିୟର ଆଦେଶ, ପାଳିତ ହେବ ବୋଲି ଆଶା କରି ଆଦେଶ ଦିଆ ହେଉଛି ।

ମୋର ପାପକୁ କପରିଭାବରେ ସଂସ୍କାର କରୁଛି ତାହା ଭବିଷ୍ୟତରେ ଜାଣିବ । ବର୍ତ୍ତମାନ ତାର ଆଲୋଚନା ବନ୍ଦ ଥାଉ ।

ଗୋଟିଏ ଚିଠି ପଠେଇଲି । ବଡ଼ କୌତୁକର । କାଲିଦିନ ତଳେ ଆଜି ଏପରି ଖଣ୍ଡେ ପାଇଥିଲି । ମୁଁ ଏମାନଙ୍କୁ କପରି ଭାବରେ ଉତ୍ତର ଦେବି ଜାଣେନା —ତେବେ ସହାନୁଭୂତିସମ୍ପନ୍ନ ଉତ୍ତର ଦିଏ ।

ଆସ ମୋର କଳ୍ପଲତା, ଜୀବନର ଲକ୍ଷ୍ମୀ, କୁଟୀରର ଲକ୍ଷ୍ମୀ ମୋର, ପ୍ରାଣର ସମଗ୍ର ବ୍ୟଗ୍ରତାରେ ଆଲିଙ୍ଗନ ଦିଏ ।

ଶୀଘ୍ର ଚିଠି ଦିଅ—ମୁଁ ଅନେଇ ରହିଛି । ଏ ବ୍ୟସ୍ତତା ଭିତରେ ତମର ଚିଠି ଏକମାତ୍ର ଶାନ୍ତି ଧାରା । ଇତି ।

ଅତ୍ୟନ୍ତ ପ୍ରିୟ ତମର,



## ପୂଜାର ପାଣ

ଆର୍ଟସ୍ କଲେଜ୍
କଟକ
୧୯-୧୦-୩୨

ପ୍ରାଣର ପ୍ରାଣ ମୋର,

ତମେ ମୋ ପତ୍ରକୁ ଅପେକ୍ଷା କର, ମୁଁ ଆଉ ତମ ପତ୍ରକୁ ଅପେକ୍ଷା କରେ ନା ? ତମର ପତ୍ର ନ ପାଇ କି ଯେ ଆଶଙ୍କା, କି କ୍ରୋଧ, କି ଅଭିମାନ କ'ଣ କହିବ ! କେତେ ପାପ ଚିନ୍ତା ଯେ କରିଛି, ତମକୁ ଦେଖିଲେ ତମ ପାଦଧରି ସେଥିପାଇଁ କ୍ଷମା ମାଗିବି । ତମର ପତ୍ର ପାଇ ସଙ୍ଗେ ସଙ୍ଗେ ଅନୁତାପ କରିଛି । ଚିଠି ଦେଇ ଚିଠି ପାଇବା ପର୍ଯ୍ୟନ୍ତ ଯେ ମନୋବେଦନା ତା' ମୁଁ ଜାଣେ, ଆଉ ମୁଁ ଯାହାଙ୍କ ପାଖରେ ଅଛି ସେ ଜାଣନ୍ତି ଏବଂ ଜାଣୁଥିଲେ ଜାଣିଥିବେ ଅନ୍ତର୍ଯ୍ୟାମୀ ଭଗବାନ । ଧନ ମୋର, ପତ୍ର ଦେବାରେ ଆଉ କେବେ ଅବହେଳା କରିବ ନାହିଁ । ତମେ ଗାଁକୁ ଦେଇଥିବା ପତ୍ର ମୁଁ ପାଇନି । ଆଜି ପାରିକୁଦ ପୋଷ୍ଟମାଷ୍ଟରଙ୍କୁ ଚିଠି ଦେଉଛି, ସେ ଚିଠି ପଠାଇ ଦେବାକୁ । ଯଦି ଘରେ ସେ ଚିଠି ପହଁଚିଥାଏ ତେବେ ବଡ଼ ଖରାପ ହେବ । ଗାଁରୁ ଏ ଭିତରେ ଖଣ୍ଡେ ଚିଠି ପାଇଛି । ସବୁ ଭଲ । ମୁଁ ପତ୍ର ନ ଦେଇଥିବାରୁ ସେମାନେ ବଡ଼ ଉତ୍କଣ୍ଠିତ ଅଛନ୍ତି । ଫୁଲର ଶ୍ୱଶୁର ପ୍ରାଣତ୍ୟାଗ କରିଛନ୍ତି । ଫୁଲର ସ୍ୱାମୀ ଟୋକା ଓ ବ୍ୟଭିଚାରୀ । ମତେ ବଡ଼ ଆଶଙ୍କା ଲାଗୁଛି, ସେ ତା'ର ସମସ୍ତ ସମ୍ପତ୍ତି ଉଡ଼େଇ ଦେଇ ଫୁଲକୁ ଶେଷରେ ହଇରାଣ କରିବ । ଦାଦା, ଚିଠିରେ ତମ କଥା ପଚାରିଛନ୍ତି । ତମେ କୁ'ଠି ଅଛ, କ'ଣ କରୁଛ ସେ ଲେଖିଥିଲେ, ମୁଁ ଉତ୍ତରରେ ସବୁ ଜଣାଇ ଦେଇଛି ।

ମୁଁ ଏ ପର୍ଯ୍ୟନ୍ତ ଏଠାରେ ପ୍ରତିଷ୍ଠିତ ହୋଇ ନାହିଁ, କୌଣସି କାର୍ଯ୍ୟରେ । କିନ୍ତୁ ଆଶା କରୁଛି ଶୀଘ୍ର ହେବ । ପର ଚିଠିରେ ତମେ ସଠିକ ବିବରଣୀ ପାଇବ । ଅନେକ ସମୟରେ ବଡ଼ ନିରାଶା ଆସୁଛି । କିଛି ନ ମିଳିଲେ ମୁଁ କ'ଣ କରିବ କିଛି ଭାବି ପାରୁନି । ଅନ୍ୟ ସମୟରେ ଭାବୁଛି, ଜଗତରେ ଯଦି ନ୍ୟାୟ ବୋଲି କିଛି

ଜିନିଷ ଥାଏ, ତା'ହେଲେ ମୁଁ ଜଗତକୁ ଯାହା କରିବାକୁ ଆସିଛି ତା'ର ପନ୍ଥା ଭଗବାନ ଦେଖାଇ ଦେବେ । ଦେଖାଯାଉ । ମୋର ଆଉ ଏକ ବିଶ୍ୱାସ କ୍ରମେ ଦୃଢ଼ୀଭୂତ ହେଉଅଛି, ତାହା ଏଇ ଯେ—ମୁଁ ଯାହାକୁ ଜୀବନର ସାଥୀ କରି ପାଇଛି ସେଇ ବାଳିକାର ପ୍ରେମ ଓ ସତୀତ୍ୱ ମତେ ମହାନ୍ ବିଖ୍ୟାତ ଓ ସୁଖୀ କରାଇବ । ତମେ ଏଇ ଦରିଦ୍ର ଓ ଅଧମର କ୍ରମେ କ୍ରମେ ସ୍ନେହର ପାତ୍ର ନ ହୋଇ ପୂଜାର ପାତ୍ର ହୋଇ ଉଠୁଛ । ହୋଇପାରେ, ମୁଁ ଦରିଦ୍ର ହୋଇ ମରିବି । ତା' ହେଲେ ମଧ୍ୟ ମୁଁ ତୁମକୁ କଲ୍ୟାଣମୟୀ ଲକ୍ଷ୍ମୀ ରୂପରେ ପୂଜା କରିବି । ତମର ନିବିଡ଼ ସ୍ନେହ ଏ ନିରାଶାମୟ ଜୀବନରେ ଏକମାତ୍ର ଆଶାର ପ୍ରଦୀପ । ପ୍ରେମମୟ ଭଗବାନ ଅନାବିଲ ପ୍ରେମର ମୂଲ୍ୟ ବୁଝନ୍ତି ବୋଲି ଲୋକରେ ବିଶ୍ୱାସ ଅଛି । ସେହି ବିଶ୍ୱାସ ମତେ ଆଶ୍ୱାସନା ଦେଉଛି ।

ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀଙ୍କ ନିକଟରୁ ମୁଁ ଏଇ ମାତ୍ର ଫେରୁଛି । ବର୍ତ୍ତମାନ ଅସ୍ପୃଶ୍ୟତା ନିବାରଣ ନିମନ୍ତେ ସେ ପୁରୁଷ ଓ ସ୍ତ୍ରୀ-କର୍ମୀ ଖୋଜୁଛନ୍ତି । ସେଇ ସମ୍ପର୍କରେ ମତେ ଡାକିଥିଲେ । ମୋର ଅର୍ଥ-ସ୍ୱଚ୍ଛଳତା ଥିଲେ ମୁଁ ବିନା ପଇସାରେ କାମ କରନ୍ତି । ବର୍ତ୍ତମାନ ମତେ ପଇସା ନେଇ କାମ କରିବାକୁ ହେବ । ଉପଯୁକ୍ତ ଅର୍ଥ ପାଇଲେ ମୁଁ ବୋଧହୁଏ ଏଇ କାମ କରିବି । ଏଇ ସମ୍ପର୍କରେ ମୁଁ ତମ କଥା ମଧ୍ୟ କହିଲି । ଅବଶ୍ୟ ତମ ନାଁ ବା ତମେ ମୋର କ'ଣ ସେ ସବୁ କିଛି କହିନି । ଖାଲି କହିଲି ଯେ, ଜଣେ ବାଳିକା କାମ କରିବାକୁ ଇଚ୍ଛୁକ । ସେ କହିଲେ ତାଙ୍କୁ ଶୀଘ୍ର ଆଣ । ତମେ ପ୍ରସ୍ତୁତ ହୁଅ । ମୋର ହାତକୁ ଟଙ୍କା ଆଇଲେ ମୁଁ ନିଜେ ଯାଇ ନେଇ ଆସିବି । ମୁଁ ବାପାଙ୍କୁ ଲେଖିବା ଏଇକ୍ଷଣି ଉଚିତ ମନେ କରୁନି । କାରଣ, ତମ ବା ମୋ' ପାଇଁ ତାଙ୍କ ପଇସା ଆଉ ଖର୍ଚ୍ଚ କରିବା ଉଚିତ ନୁହେଁ । ତେବେ ତମେ ତାଙ୍କୁ ଆଗରୁ କହି ରଖ ଯେ ତମେ ଯେକୌଣସି ମୁହୂର୍ତ୍ତରେ ଏଠାକୁ ଆସିପାର ।

ସ୍ୱରଲିପି ବହି ପରେ ପଠାଇବି । ବର୍ତ୍ତମାନ ଯେପରି ସୁବିଧା ମିଳୁଛି ଶିଖିଯାଅ ।

ତମର ସ୍ୱାସ୍ଥ୍ୟ କଥା ଶୁଣି ମତେ ଚିନ୍ତା ମାଡ଼ି ଆସିଲାଣି । ତମେ ଖୁବ୍ ଦୈହିକ ପରିଶ୍ରମ କର । ମୁଁ ଯେମିତି କହିଥିଲି ସେମିତି କସ୍‌ରତ୍ କର ଓ ଦେହରେ ତେଲ ଲଗାଇ ମୋଡ଼ । ତମେ ଏଠାକୁ ଆସିଲେ ଡାକ୍ତରଣୀ ପାଖରେ ତମକୁ ପରୀକ୍ଷା କରାଇ ନେବି । ତମେ ଏତେ କାନ୍ଦୁଛ କାହିଁକି ? ଚିନ୍ତା କରିବ ନାହିଁ—ଚିନ୍ତା କଲେ ସ୍ୱାସ୍ଥ୍ୟ ନଷ୍ଟ ହେବ । ଦୁଧ ପ୍ରଚୁର ପରିମାଣରେ ଖାଅ । ରାତିରେ ରୁଟି ଓ ଘିଅ ଖାଅ । ବାଳ ସେମିତି ଉପୁଡ଼ୁଛି ? ସବୁ ଲେଖ ।

ତମୁକୁ ପୁଣି ସାଥୀକରି ନ ପାଇଲେ ଏ ଜୀବନରେ ସୁଖ ନାହିଁ । ସବୁ ନିର୍ଭର କରୁଛି ଅର୍ଥ—ବ୍ୟବସ୍ଥା ଲାଭ କରିବାରେ । ଆଶା କରୁଛି ମୁଁ ନିକଟରେ ପାଇବି । ନ ପାଇଲେ କ'ଣ ଯେ କରିବି କିଛି ବୁଦ୍ଧି ଦିଶୁନି । ନ ହେଲେ ମୋର ସମସ୍ତ କଳ୍ପନା ଚୂର୍ଣ୍ଣ ହୋଇଯିବ । ବୋଧହୁଏ ତମୁକୁ ଚିଠି ଲେଖିବା ପାଇଁ ମଧ୍ୟ ପଇସା ରହିବ ନାହିଁ ।

ମୋର ପ୍ରାଣର ପ୍ରେମ ଗ୍ରହଣ କରିବ । କବିତ୍ଵ ଆଲିଙ୍ଗନ ଓ ପ୍ରିୟସ୍ଥାନ ମାନଙ୍କରେ ଉତ୍ତପ୍ତ ଚୁମ୍ବନ ଗ୍ରହଣ କରିବ । ସବୁ ଦୋଷ ଭୁଲିଯାଅ, ସବୁ ଅପରାଧ କ୍ଷମାକର । ଏ ଜୀବନର ଧ୍ରୁବତାରା ତମେ, ସ୍ଥିର-ପ୍ରେମ ଓ ଅଟଳ କଲ୍ୟାଣ ଦେଇ ଏ ଅପଦାର୍ଥର ଜୀବନକୁ ମହିମାମୟ କର, ଲକ୍ଷ୍ମୀ, ଆସ ତମୁକୁ ଆଲିଙ୍ଗନରେ ଧରେ ଟିକିଏ । ଓଠ ଆଣ ଚୁମ୍ବନ ଦିଏ । ପତ୍ର ପାଇ ପତ୍ର ଦେବ । ଏ ହୃଦୟ ତମୁକୁ ଭାବିଲେ କିପରି ସ୍ପନ୍ଦିତ ହୋଇ ଉଠୁଛି । ତା' ତମର ହୃଦୟ ଆଣି ଯୋଡ଼ି ଦେଲେ ହିଁ ଜାଣି ପାରିବ । —ଥାଅ— ତମର ପ୍ରିୟ,

ପୁନଶ୍ଚ :—

ଚିଠି ପାଇ ଚିଠିର ଉତ୍ତର ଦେବାକୁ ଇଚ୍ଛା ହେଉନି ! ମୋର କୋଠାଘର, ଜମିଦାରୀ ଥିଲେ ବୋଧହୁଏ ଏ ବ୍ୟବହାର ପାଉ ନ ଥାନ୍ତି । ହଉ, ବଡ଼ଲୋକ ହୋଇ ରହିଥାଅ ଓ ବଡ଼ଲୋକଙ୍କୁ ସ୍ନେହ ଦିଅ—ମୋର କିଛି କହିବାର ନାହିଁ । ଗରିବ ହେଲେ ମଧ୍ୟ ଏ ଜୀବନରେ ଏକ ସ୍ଵତନ୍ତ୍ର ମହତ୍ତ୍ଵ ଅଛି । ଦୀନ ହୀନ, ଅଧମ, କୁତ୍ସିତ ହେଲେ ମଧ୍ୟ ଏ ଜୀବନର ଏକ ନିଜତ୍ଵ ଅଛି । ମନେରଖିବ ଯେ ଏପରି ଲୋକକୁ ମଧ୍ୟ ସ୍ନେହ ଦେବାର ଲୋକ ଏ ଜଗତରେ ଅଛନ୍ତି । ସମସ୍ତ ଜୀବନ ଧରି ସେହିମାନଙ୍କ ଲାଗି କାର୍ଯ୍ୟକରି, ଶେଷରେ ମୃତ୍ୟୁର ଆଶ୍ରୟ ନେବି । ଭାବିଥିଲି ତମର ସ୍ନେହ ମୋ ଜୀବନରେ ସୁଖ-ସୃଷ୍ଟି କରିଥାନ୍ତା । କିନ୍ତୁ ମୁଁ ଭୁଲ୍ ବୁଝିଥିଲି । ତମର ଯେଉଁଆଡ଼େ ଇଚ୍ଛା ସେ ଆଡ଼େ ଯାଅ । ତମେ ଏପରି ଅନାଦର କରିବ ବୋଲି ମୁଁ ତ ସ୍ଵପ୍ନରେ ଭାବି ନ ଥିଲି । ଆଚ୍ଛା ଥାଉ, ମୁଁ ତମର ଅନିଚ୍ଛୁକ ସ୍ନେହ ମାଗିବାକୁ ଯାଉନି । ଅଯାଚିତ ଭାବରେ ସ୍ନେହ ଦେବାକୁ ମତେ ଲୋକର ଅଭାବ ହେବେ ନାହିଁ ।



## 'ହେମଶସ୍ୟ' ପଢ଼ିଛ ?

ଟ୍ରେନିଂ କଲେଜ ହଷ୍ଟେଲ
ପୋ. ବୁଦ୍ଧମନ୍ଦିର ରୋଡ
କଟକ
୧୦, ୯, ୫୩

ହୃଦୟର ଜ୍ୟୋତ୍ସ୍ନା ମୋର,
ପ୍ରାଣର ଲକ୍ଷ୍ମୀ ମୋର,
ସାନ ଭଉଣୀଟି ମୋର,

ମୁଁ ଚିଠି ନ ଦେଲେ ମଧ୍ୟ, ତମେ ଦେଇଥିଲେ, ତମର ସମ୍ମାନ କମି ଯାଇଥାନ୍ତା, ନା ? ମୂର୍ଖ ବାଳିକା, ତମର ସମ୍ମାନ ଯେ ପ୍ରିୟପାଖରେ କେତେ ବଢ଼ିଥାନ୍ତା; ତମେ ତ ଜାଣି ପାରିଲନି । ତମର କ'ଣ ଆଉ ସେ ସ୍ନେହ ଅଛି କି ? ସେଦିନ ଗଲାଣି, ସେ ବ୍ୟାକୁଳତା, ସେ ଉଦ୍‌ବେଗ, ସେ ପ୍ରଣୟ—ସବୁ ଗଲାଣି । ନା ? ଯିବାର ତ କଥା—ଅଯୋଗ୍ୟଙ୍କ ପାଖେ ସ୍ନେହ କେତେ ଦିନ ରହନ୍ତା ? ଭୁଲ୍‌ରେ ଯେତେ ଦିନ ରହିଯାଇଥିଲା, ଯାଇଥିଲା—ଏଣିକି ସାବଧାନ ହେବା ଉଚିତ । ବୋଧହୁଏ ଯୋଗ୍ୟତର ବ୍ୟକ୍ତିର ସନ୍ଧାନରେ ଅଛ, ନା ?

ସଖି ମୋର, ତମେ ଭାବୁଥିବ ମୁଁ ଜାଣି ଜାଣି ଚିଠି ଦେଇନି । କିନ୍ତୁ ତମେ ପ୍ରକୃତ କାରଣ ଜାଣିନ । ଏକେତ ଦରିଦ୍ର ସ୍ୱାମୀର ସବୁବେଳେ ଟିକେଟ୍ ନ ଥାଏ, ଦ୍ୱିତୀୟରେ ହତଭାଗ୍ୟର ମାନସିକ ଅବସ୍ଥା, କ୍ରମେ କ୍ରମେ ପ୍ରେମର ଏକାବେଳକେ ଅନୁପଯୁକ୍ତ ହୋଇ ଉଠୁଛି । ତମେ ଭାବଥିବ, ଏମ୍. ଏ. ପାଶ୍ ପରେ ମୁଁ ଖୁସି ଥିବି— ବଡ଼ ଭୁଲ୍ ତମର । ଖୁସି ଥିଲେ ତମ ପାଖକୁ ଚିଠି ଦିଅନ୍ତିନି ? ତମର ସତୀ—ଦେହ ଛୁଇଁ କହୁଛି ଲକ୍ଷ୍ମୀ, ଏହା ସତ୍ୟ—ବିଶ୍ୱାସ କର ।

ପ୍ରଥମ ଓ ପ୍ରଧାନ କାରଣ ହେଉଛି ସଂସାରର ଏ ଜଂଜାଳ । ଏତେ ଲୋକ ମତେ ଘେରି ରହିଛନ୍ତି—ସେମାନଙ୍କର ଦୁଃଖ ମୁଁ ଆଖିରେ ଦେଖୁଛି—ଅଥଚ ଚାହିଁ ?

ସାହାଯ୍ୟ କରି ପାରୁଛି କାହିଁ ? ସେମାନଙ୍କୁ ମୁଁ କ'ଣ ମୋର ଏହି M. A Passକୁ ଦେଖାଇବି ? ତା'ପରେ ସେଇ ଅଭାବ ମେଣ୍ଟାଇବାପାଇଁ ମତେ ଜୀବନ ବ୍ୟାପି କି ସଂଗ୍ରାମ କରିବାକୁ ହେବ ! କେଉଁଠି ମାଷ୍ଟ୍ର ହୋଇ ଦିନଯାକ ବକର୍ ବକର୍ ଗୁଡ଼ରେ କ୍ଳାନ୍ତହୋଇ—ସାରା ଜୀବନଟା କଟିଯିବ ସିନା । କାହିଁ ମୋର ଉଚ୍ଚ ଆଦର୍ଶ ! କାହିଁ ମୁକ୍ତ-ହସ୍ତ ତ୍ୟାଗ ! କାହିଁ ଜୀବନର ଉପଭୋଗ ! ସାମାନ୍ୟ କେତୋଟା ମୁଦ୍ରା ପାଇଁ ମତେ କି ଜଂଜାଳ ସବୁ ବହନ କରିବାକୁ ହେବ ଭାବିଲେ ମୁଁ ହତବୁଦ୍ଧି ହୋଇ ଯାଉଛି । କ'ଣ କରିବି କହ ଲକ୍ଷ୍ମୀ ।

ତା'ପରେ ଏଣେ ବନ୍ୟା ବଜ୍ରପାତ । ଅଗାଧୁ ଯେମା କରୁଣ ଭାବରେ ସାହାଯ୍ୟ ପାଇଁ ଲେଖିଛନ୍ତି । ତେଣେ ଦଦା ଲେଖିଛନ୍ତି । ଗ୍ରାମ ଅଭିମାନ କରି ନାନା କଥା କହି ପଠଉଛି । ଅପା ତ କମିତ ଲେଖୁଛି ତମେ ଜାଣ । ମୁଁ କ'ଣ କରିବି କହ ବାଯ୍ୱାଣି ମୋର !

ଏସବୁ ଦୁଶ୍ଚିନ୍ତା ଭିତରେ ମନରେ ସୁଖ-ଶାନ୍ତି ଆସିବ କୁଆଡ଼ୁ ? ତମେ ମଧ୍ୟ ଚିଠି ନ ଦେଇ ଅଶାନ୍ତି ବଢ଼େଇଛ ମୋର । ତମେ ଆଉ କ'ଣ ସେ ହେମ ଅଛ କି !

ଅପା ପାଖକୁ ଖଣ୍ଡେ ଚିଠି ଦେଇଛି । ତାକୁ ନାହିଁ କରି ଦେଇଛି ଯେ ମୁଁ ଯିବିନି । ଗଲେ, ମତେ ସାହାଯ୍ୟ ପାଇଁ ଖାଇଯିବେ । ମୁଁ କି ଉତ୍ତର ଦେବି ? କି ଆଶ୍ୱାସନା ଦେବି ? ବରଂ ଦୂରରେ ରହିବା ଭଲ । ଯେ, ଯାହା କହିଲୁ ପଛେ । ତମେ କ'ଣ କହୁଛ କହିଲ !

ହେମଶସ୍ୟର ବିକ୍ରୟ ଲବ୍ଧ ଧନ ଆମ ଗାଁକୁ ଦେବି ବୋଲି ସ୍ଥିର କରି ନେଲୁଛି । କିଛି ହେବାର ଆଶା ଅଛି । ତମେ ସେଠି କିଛି ବିକେଇ ପାରିବ କି ? କହିଲେ, ଦୁର୍ଗାଦାନରେ ପଠାଇଦିଅନ୍ତି । ପାରିବୁଦ ସମ୍ବନ୍ଧରେ 'ସମାଜ'ରେ ଯାହା ବାହାରେ ପଢ଼ୁଛ କି ? ମୁଁ ମଧ୍ୟ ଥରେ ଲେଖି ଥିଲି ।

'ସହକାର'ରେ ହାସକୌତୁକ କଥା ଯାହା ଲେଖିଥିଲ, ସେଥିଲାଗି ଭଗବାନ ପତି ଦାୟୀ—ମୁଁ ତାକୁ ଦେଇଛି ପଦେ ପଦେ ଶୁଣେଇ । ଏବେ କଲେଜର କଏ ଗୋଟେ ପିଲା ଶୋଧୁ ଥିବାର ସେ କହୁଥିଲା—ତମେ ମଧ୍ୟ ତାଅ କିଛି ଶୁଣେଇ ।

ଗତ ସଂଖ୍ୟା ସହକାରରେ 'ହେମଶସ୍ୟ' ପଢ଼ିଛ ? କହ ଲକ୍ଷ୍ମୀ, କମିତ ଲାଗିଲା । ତମର ଲାଗି ଯେ ସବୁ—ଲେଖା !

ତମର ସ୍ୱାସ୍ଥ୍ୟ କିପରି ଅଛି ? ବାଳ ଓ ଦେହ କିପରି ଅଛି ଲେଖ । ତମେ ମିଶ୍ରି ପଣା ପିଉଛ ? ଲେମ୍ବୁ ଖଣ୍ଡ ଦେହକୁ କୃଶ କରେ ବୋଲି ଶୁଣିଛି—ମନ୍ଥ ମଧ୍ୟ । ତମେ ବୁଝ । ଆଦୌ ଅବହେଳା କରନା । ମୋ'ର ସେ ସ୍ୱର୍ଣ୍ଣ ଦେହ—ସେଥିରେ ତମର ଅନଧିକାର ଚର୍ଚ୍ଚା ସୁନ୍ଦର ନୁହେଁ । ଏ ପର୍ଯ୍ୟନ୍ତ ସ୍ନେହବଶତଃ ଶାସ୍ତି ଦେଉନ—ଏଥର ଅବହେଳା କଲେ ଶାସ୍ତି କିପରି କଠୋର ହେବ ନଜେ ଜାଣିବ ।

ମୋର ସ୍ୱାସ୍ଥ୍ୟ ଭଲ ନାହିଁ । ମୁଁ କାହିଁକି କେଜାଣି ଶୁଖି ଯାଉଛି । ମନର ଏ ଦୁଶ୍ଚିନ୍ତା ଯୋଗୁ ବୋଧହୁଏ । ତମେ ଚିଠି ନ ଦେଇ ବଡ଼ ଖରାପ କରୁଛ—ମୁଁ ଅନେକ ସମୟରେ ଖରାପ ଚିନ୍ତା କରି ପକଉଛି । ଧନ ମୋର, ହାତ ଧରି କହୁଛି, ନିୟମିତ ଚିଠି ଦିଅ—ମୋ' ଉପରେ ଅଭିମାନ କଲେ ତମ ପ୍ରିୟର କ୍ଷତି—ଅର୍ଥାତ୍ ତମର କ୍ଷତି ।

ହୃଦୟର ଚନ୍ଦନ ମୋର,
ଚିଠି ଦେବ ନା ?
ତମର ପ୍ରିୟ ।



# ତମ ଚଠି ତମ ସ୍ପର୍ଶ ଦଏ

ପ୍ରାଣର ଲକ୍ଷ୍ମୀ,
ଅନ୍ଧକାରର ଦୀପଶିଖା ମୋର
ଗଣ୍ଠିଧନ ମୋର,

ବାପ୍ଯୁଣୀ, ମୁଁ ତମକୁ ଅପମାନ ଓ କଷ୍ଟ ଦେଇ ଯଥେଷ୍ଟ ଅନୁତାପ କଲିଣି । ତମେ ମୋର ଦେବୀ ପରି ! ତମେ କ'ଣ କ୍ଷମା କରି ଜାଣନି ? ମୁଁ ଯେ କପରି ଚପଳ ତା' କ'ଣ ତମେ ଆଗରୁ ଜାଣି ନ ଥିଲ, ଏବେ ନୂଆ ଜାଣିଲ ? ମୋର ଦୁର୍ବଳତାକୁ ତମେ ଧରି ବସୁଛ କାହିଁକି ? ଜାଣିଛ ତ ଦୁର୍ବଳ, ଏମିତି ଅଭିମାନ କରି କହି, ଅପମାନ ଦେଉଛ କାହିଁକି ? ତମେ କ'ଣ ଏତେ ଦିନ ଭିତରେ ମୋର ସ୍ନେହ ଆଦୌ ଜାଣିନା ? ମୁଁ ତମକୁ ସ୍ନେହ କରେ ବୋଲି ତମର କ'ଣ ଅଦୌ ବିଶ୍ୱାସ ନାହିଁ ? ଛି ବାପ୍ଯୁଣି, ମୁଁ ତମ ପଦ ଧରୁଛି; ମତେ ଶେଷଥର ଲାଗି କ୍ଷମା ଦିଅ । ତମେ ଦେବୀ, ମୁଁ ତମକୁ ଅପମାନ ଦେଇଛି । ମୋର ପାପ ସ୍ୱୀକାର—ମୁଁ ପ୍ରତିଜ୍ଞା କରୁଛି, ଆଉ ଏପରି କେବେ ହେଲେ କରିବି ନାହିଁ । ତମ ଇଚ୍ଛା ତମେ ଯାହା କର । ମୁଁ ଉତ୍ତମରୂପେ ଜାଣିଲିଣି, ମୁଁ ତମର ଉପଯୁକ୍ତ ନୁହେଁ । ତମ ଉପରେ ମୁଁ ଆଉ କୌଣସି ଅନାଗ୍ରହ କରିବି ନାହିଁ । କ୍ଷମା ଦିଅ ! ତମର ଏ ପତ୍ରରେ ମୁଁ ନିତାନ୍ତ କ୍ଷୁଣ୍ଣ ହେଉଛି । ଅବଶ୍ୟ ମୁଁ ଜାଣୁଛି ତମ ମନରେ ବି ଆଘାତ ଦେଇଛି ତଥାପି କ୍ଷମା ମାଗୁଛି । ମୁଁ ଯେ ନିତାନ୍ତ ତମର ବାପ୍ଯୁଣୀ, ଏ କଥା କେବେ ହେଲେ ଭୁଲନି । ବାତୁଳ ହୁଏ, ପାଗଳ ହୁଏ, ଦରିଦ୍ର ହୁଏ, ମୂର୍ଖ ହୁଏ, ନଗଣ୍ୟ ହୁଏ—ମୁଁ ତମର ଦୟାର ପାତ୍ର । ତମେ ପରିତ୍ୟାଗ କଲେ ଏ ଜଗତରେ ମୋର ସ୍ଥାନ ନାହିଁ—ଏ କଥା ତମେ ମୋ'ଠୁ ବେଶୀ ଜାଣ ।

ଫଟୋଗ୍ରାଫର୍ ପାଖକୁ ଓ ରାଧା ପାଖକୁ ଟଙ୍କା ପଠାଇ ଦେଇଛି । ଫଟୋ-ଗ୍ରାଫର୍‌କୁ ମୁଁ କହି ଆସିଥିଲି, ତେଣୁ ମୋର ପଠାଇଦେବା ଉଚିତ ଥିଲା । ଲୋକଟା ଅବଶ୍ୟ ଅଭଦ୍ର ବ୍ୟବହାର କଲା—ତେବେ ଆମେ ଅଭଦ୍ର ହେବା କାହିଁକି ?

ତମେ ଏତେ ବ୍ୟସ୍ତ ହେଉଛ ପୁଣି କାହିଁକି ? ମୁଁ ନିୟମିତ ଚିଠି ଦେବି । ବରାବର ତ ତମୁକୁ ନେଇ ଆସିବା କଥା ଭାବୁଛି । ଭାବୁଥିଲି, ତମୁକୁ ଲେଖିବି ନ ପଢ଼ିବାକୁ । କିନ୍ତୁ ତମେ ଯାହା ହେଉଛ, ନ ପଢ଼ିଲେ ତମ ଅବସ୍ଥା ଶୋଚନୀୟ ହେବ । ଏବେ ସ୍କୁଲକୁ ଯାଉଛ ନା, ନାହିଁ ? ସେଠି ହାଇସ୍କୁଲ ହେବାର କ'ଣ ହେଲା ? ତମର ଏତେ ବ୍ୟସ୍ତବ୍ୟସ୍ତ ହେବା ମୁଁ ପସନ୍ଦ କରୁନି । ତଥାପି ଇଚ୍ଛା ହେଉଛି ତମେ ମୋ ପାଇଁ ସବୁବେଳେ ଏମିତି ହୁଅନ୍ତ କି ! ତମେ କ'ଣ ମତେ ଭଲ ପାଅ ? ହଁ—ଉପରେ ନା—

ଏଠାର ଜଣେ ଯୁବକଙ୍କର ସ୍ତ୍ରୀ ପ୍ରାଣତ୍ୟାଗ କରିଛନ୍ତି । ବଡ଼ ଦୁଃଖ ତାଙ୍କର । ତାଙ୍କ ଦୁଃଖ ଦେଖି ମୁଁ ବରାବର ଭାବୁଛି, ମୋ ଦଶା କ'ଣ ହେବ ଭବିଷ୍ୟତରେ । ମୁଁ ପାଗଳ ହେଇଯିବି ଭାବୁଛି । ତମେ ଯେ ମୋର ବାହାର ଭିତର ସବୁ ମାଡ଼ି ବସିଲଣି—ମୁଁ ତମୁକୁ ଛାଡ଼ି କିପରି ଦିନ କାଟିବି ? ମୋର ଗୌରବରେ ଭାଗୀ ହେବ କିଏ ? ମୋର ଦୁଃଖ ପୋଛି ନେବ କିଏ ?

ଆମ ଫଟୋ ବଡ଼ ଚମତ୍କାର ହେଇଛି । ଯେ ଦେଖୁଛି ସେ ମୁଗ୍ଧ ହେଉଛି । ଲକ୍ଷ୍ମୀନାରାୟଣ ବାବୁ ଖଣ୍ଡେ ମାଗିଛନ୍ତି । ମୁଁ ଦେବି । ବୃନ୍ଦାଙ୍କପାକର ଭଲ ହେଇଛି । ଆଜି ତମର ଗ୍ରୁପ-ଫଟୋକୁ ବଡ଼ କରିବାକୁ ନେବି । ମୁଁ ଏଣେ ତମୁକୁ ପୂଜା କରୁଥାଏ, ତମେ ତେଣେ ମୋ ଉପରେ ଏତେ ମୁହଁ କରୁଥାଅ ।

ମୁଁ ସେଠୁ ଆସି ବଡ଼ ବ୍ୟସ୍ତ ଅଛି । ଆମକୁ ଏ ମାସ ଯାକ ସ୍କୁଲରେ ପଢ଼େଇବାକୁ ହେବ । ତେଣୁ ସମସ୍ତେ ବ୍ୟସ୍ତ ଅଛୁ । ତଥାପି ମୁଁ ଚିଠି ନିୟମିତ ଦେବି । ତମେ ମଧ୍ୟ ଏମିତି ବିଳମ୍ବ କରନା । ତମ ଚିଠି, ତମ ସ୍ୱପ୍ନ ଦିଏ ଓ ତମ କଥା ଶୁଣାଏ । ସେ ଯେ କେତେ ପ୍ରିୟ ତା' କ'ଣ ତମେ ଜାଣନି ? ତମର ମନ ଏମିତି କାହିଁକି ହେଉଛି ? ତମର ମାନସିକ ବ୍ୟାଧି ଲାଗି ମୁଁ ଔଷଧ ପ୍ରସ୍ତୁତ କରୁଛି । ଖାଇବ ନା ?

ଧନ-ସମ୍ପଦ ମୋର, ମତେ କ୍ଷମା କର । ଏ ଜୀବନ ତମର । ତମୁକୁ ଯଦି ବିରକ୍ତ କରିଛି, ସେ କେବଳ ସ୍ନେହର ଅଧିକାରରୁ । ମୋର ତ କାନ ମୋଡ଼ିବାର ଅଧିକାର ଅଛି, ଏ କ'ଣ ! ନାହିଁ ବୋଲି, ନାହିଁ କର, କଥା ଛୁଟିଯିବ । ଅଛି ଯଦି, କ୍ଷମା ନ କରି ଧରି ବସୁଛ କାହିଁ ? ବସନ୍ତର ମାଧବୀ ଲତା ମୋର, ଆସ, ସେଇ ଚିର-ପୁରାତନ, ଚିର-ନୂତନ ଆଶ୍ଳେଷ ଦିଅ । ସେଇ ତନୁ-ଲତା, ଯାହା ସ୍ପର୍ଶ କଲେ ମୋର ସମସ୍ତ ଇନ୍ଦ୍ରିୟ ଜାଗ୍ରତ ହୋଇ ଉଠେ, ପୁଣି ତାର ଯାଦୁ-ସ୍ପର୍ଶ ଦିଅ ।

ବାଳର ତପସ୍ୟା କରୁଛ ଜାଣି ସୁଖୀ ହେଲି । ସେଇପରି କର । ନିଶ୍ଚୟ ଫଳ ପାଇବ । ଦୁର୍ଗା ଗଲାବେଳେ ତା' ହାତରେ ମୋର ଓ ତମର ସବୁ ଫଟୋ ପଠାଇ ଦେବ ।

ତମର ସମସ୍ତ କଥା ଲେଖିବ । ଏମିତି ଦୁଃଖପୂର୍ଣ୍ଣ କାହାଣୀ ଓ ଅଭିମାନ ଲେଖି ବସିଲେ ମୁଁ ଚିଠି ପଢ଼ିବିନି । ତମେ ଯଦି ଏମିତି ହେବ, ମୋ'ପରି ଦୁର୍ବଳ-ଚେତା ଲୋକକୁ ସମ୍ଭାଳିବ କିଏ ?

କାଲି ତମ ଜାତକ ଦେଖାଇଥିଲି । ୭।୮ ଦିନ ପରେ ତମର ଗୋଟେ ଉତ୍ତମ ଦଶା ଆସୁଛି । ସେଥିରେ ତମର ଓ ମୋର ସର୍ବବିଧ ମଙ୍ଗଳ ହେବାର ଶୁଣିଲି । ଦେଖାଯାଉ କ'ଣ ହେଉଛି ।

ଶୀଘ୍ର ଚିଠି ଦିଅ । ମୋ ରାଣ । ଶେଷବାର ପାଇଁ କ୍ଷମା ମାଗୁଛି । ସେଇ ଚିର ଆଦରର ମୁଖମଣ୍ଡଳ ଟେକ ନା—ଆଖି ପୂରାଇ ଦେଖିନିଏ ଟିକିଏ ! କି ଆଖି ! କି ସୁହାଣି !—ମାଇଦେବ ଲୋକଙ୍କୁ ଭମେ—

ମୋର ଲକ୍ଷ ଲକ୍ଷ ଚୁମ୍ବନ ଗ୍ରହଣ କରିବ । ଇତି ।

ତମର
ଚିର କାଳର
ପ୍ରିୟ ।



# ମୋର ସାଧନା ପ୍ରେମରେ

ହୃଦୟର ମଣି ମୋର,
ଜୀବନର ପରମ ପରିତୋଷ ମୋର,
କଣ୍ଠର ରତ୍ନ-ହାର ମୋର,

ବାୟୁାଣୀ, ତମେ ଏମିତି ବାୟୁାଣି ହୁଅ ବୋଲି ମୋର ଧାରଣା ନ ଥିଲି ! ମୁଁ ଏପରି ଭାବିବାର ଯଥେଷ୍ଟ କାରଣ ତମେ ଅଜ୍ଞାତରେ ଯୋଗେଇଛ । ମୋର ଦୋଷ କ'ଣ ? ମୁଁ ଭାବୁଥିଲି, ତମେ ମୋ ପତ୍ରକୁ ଏତେ ଉତ୍କଣ୍ଠା ସହକାରେ ଅପେକ୍ଷା କରୁ ନ ଥିବ ବୋଲି । ତେଣୁ ଲେଖିବି ଲେଖିବି ବୋଲି ମଧ୍ୟ ଲେଖୁ ନ ଥାଏ । ହଉ, ମତେ ଏବେ କ୍ଷମା କର । ତମୁକୁ ଯେଉଁ, "ପ୍ରାଣର ସ୍ନେହ-ସୁଧା ଚୁମ୍ବନ ଦେଇଥିଲି, ସେ କ୍ଷଣିକ ଉତ୍ତେଜନାରେ ନୁହେଁ" ହେମ—ସେ ଚିରକାଳ ବ୍ୟାପି ଅଗାଧ ପ୍ରେମର ଆରମ୍ଭ—ଚିହ୍ନ ବୁଝେ । ତା'ର ଆରମ୍ଭ ହେଇଛି ମାତ୍ର—ଶେଷ ତ କେଉଁ ସୁଦୂର ଜନ୍ମାନ୍ତରେ; ଅଜଠୁ ବ୍ୟସ୍ତ କାହିଁକି ? 'ହୃଦୟର ରକ୍ତ ଦେଇ' ଯା'କୁ 'ଆପଣାର କରିଛୁ'—ତାକୁ ଛାଡ଼ିବ କପରି ? ତା'ପାଇଁ ଆହୁରି ରକ୍ତ ଢାଳିବ ପାଗଳି ମୋର । ତମ ପରି ନାରୀ, ଯା'କୁ ସ୍ନେହ ଦିଏ, ସେ ଯଦି ତାହା ପରିତ୍ୟାଗ କରେ, ସେ ଅତ୍ୟନ୍ତ ଅଧମ । ମୋର ବିଶ୍ୱାସ ବୁଦ୍ଧି ତ ଅଛି ! ମୁଁ କ'ଣ ମୋ ଭଲ-ମନ୍ଦ ବିଚାରି ପାରୁନି ? ତମେ ଯେ ମୋର ଅନନ୍ତ କଲ୍ୟାଣର ମୂର୍ତ୍ତି ବିକାଶ, ଏ କଥା କ'ଣ ମୁଁ ବୁଝିନି । ବୁଦ୍ଧଦେବଙ୍କ ପରି ଗୋପାକୁ ମୋର, ପରିତ୍ୟାଗ କରିବାର ବାସନା କେବେ ହେଲେ ହେଇନି । ମୋର ସାଧନା ପ୍ରେମରେ—ବୈରାଗ୍ୟରେ ନୁହେଁ । ତମର ସିନା ବୈରାଗ୍ୟରେ ! ମନେ ପଡ଼ୁନି କି ସବୁକଥାକୁ କପରି ଖାଲି ନାହିଁ ନାହିଁ କର ।

ମୋର ସବୁ କୁଶଳ । ଟିକିଏ ମୋଟା ହେଇ ଯାଉଛି । ତମର ପରମ ପାତିବ୍ରତ୍ୟ ମତେ ସର୍ବବିପଦରୁ ରକ୍ଷା କରିବ—ତମେ ନିଶ୍ଚିନ୍ତ ରହ । ମୁଁ ତମ ଆଗରୁ ମରି ଯାଉନି ମ, ଏତେ ବ୍ୟସ୍ତ କାହିଁକି ! ତମେ ସିନା ନିଷ୍ଠୁର, ନିର୍ମ୍ମମ, ପାଷାଣୀ—ମତେ ଛାଡ଼ି ଚାଲିଯିବ !

ଆଶାକରେ ମୋର ପତ୍ର ପାଇ ପ୍ରକୃତିସ୍ଥ ହେବଣି । ତମେ ତ ଏମିତି ହେଉଛ ତମକୁ ଛାଡ଼ି କୁଆଡ଼େ ଯିବ ? ତମେ ଯଦି ଆସିବାକୁ ପ୍ରସ୍ତୁତ ଅଛ, ତେବେ ପରୀକ୍ଷା ସରିବା ସଙ୍ଗେ ସଙ୍ଗେ ତମକୁ ଯାଇ ନେଇ ଆସିବି । ଓଃ, ତମକୁ ଦେଖିବାକୁ କି ଯେ ଇଚ୍ଛା ହେଉଛି, କିପରି ଲେଖିବି । ମନେ ହେଉଛି ଯେପରି ତମକୁ କେବେ ସ୍ୱପ୍ନରେ ଦେଖିଥିଲି—ଆଉ ଦେଖିବିନି କେବେ । ତମ ପାଖକୁ ଟଙ୍କା ପଠାଇ ଦେବି, ତମେ ଏଠିକି ଏକୁଟିଆ ଚାଲି ଆସି ପାରିବ ? 'ନାରୀ—ସ୍ୱାଧୀନତା' ନାରୀ ସ୍ୱାଧୀନତା ବୋଲି ମନୋଯୋଗ—ଏତିକି କରି ପାରିବନି । ପ୍ରେମ ପାଇଁ ମାଇପେ ସାଗର ପର୍ବତ ଲଙ୍ଘି ଛନ୍ତି, ଆଉ ତମେ ରେଲରେ ଆସି ପାରିବନି ।

ଏଥର ଏବେ ମତେ କ୍ଷମା କର । ମୁଁ ତମର ସେହି, ଆପଣାର ଅତ୍ୟନ୍ତ ପ୍ରିୟଟି । ଆମେ କି ପରସ୍ପରକୁ ଛାଡ଼ି ରହିପାରିବା ଯେ ତମେ ଏତେ ବ୍ୟାକୁଳ ହେଉଛ । ପୂର୍ବ ଜନ୍ମର ସଂସ୍କାର ଯୋଗ, ଏ ଜନ୍ମରେ ମିଳନ ହୋଇଛି । ସେ କି ଛିଣ୍ଡିବ ଏତେ ସହଜରେ ଭାବୁଛ ? କେବେ ଦେଖିବ, କେବେ ପୁଣି ଚୁମ୍ବନ ଦେଇ ଦେଇ ଅନ୍ତରର ଅବ୍ୟକ୍ତ ବାଣୀ ଶ୍ରୁତିମୂଳରେ କହି କହି ଦେବି । କେବେ ପୁଣି ଗମ୍ଭୀର-ଚୁମ୍ବନ ବେଳେ ତମର ବାଧା ପାଇ ମୁଁ ବିରକ୍ତ ହେବି । × × ×

ଶୀଘ୍ର ଚିଠି ଦେବ । ପାଗଳାମି କରିବନି, ୪।୫ ଦିନ ତଳେ ଟୀକା ନେଇ ଦେହଟା ଭଲ ନ ଥିଲା । ଝାଡ଼ା ସଫା ହେଉ ନ ଥିଲା । ଆଜି ଟିକିଏ ଭଲ ଲାଗୁଛି । ମୋ ଦାନ୍ତ ବଡ଼ ଖରାପ ହୋଇ ଯାଉଛି । କ'ଣ କରିବି କହିଲ ? ଦାନ୍ତ ଘଷିଲା-ବେଳେ ରକ୍ତ ବୋହୁଛି । ମୁଁ ବଡ଼ ଚିନ୍ତିତ ସେଥିପାଇଁ । ତମେ କିଛି ଭାବିବନି ଏଥିପାଇଁ । ମୁଁ ଉପଯୁକ୍ତ ଯତ୍ନ ନେଉଛି ।

ତମେ ସୂତା କାଟ । ଆମ ଜମିରେ ଆମେ କପା କରି, ଆମ ଲୁଗା ଆମେ ତିଆରି କରିବା ଉଚିତ । ଜୀବନକୁ ଯେତେ ପରିମାଣରେ ପାରିବା ସରଳ କରିବା । ଜୀବନରେ ବିଳାସ-ବ୍ୟସନ ଓ ନାନା ଜଟିଳତା ପଶି, ଏ ଜାତିକୁ ଦୁର୍ଦ୍ଦଶା ମାଡ଼ି ବସିଛି । ଗାନ୍ଧିଙ୍କର ସରଳ ଜୀବନରୁ ଏମାନେ ଯଦି କିଛି ଶିଖନ୍ତେ ତେବେ ଏ ବେକାର ସମସ୍ୟା ଏତେ ତୀବ୍ର, ହୁଅନ୍ତା ନି, କି ଜୀବନ ଏତେ ଦୁର୍ବହ ହୁଅନ୍ତା ନି ।

ତମର ଅନ୍ୟାନ୍ୟ ସବୁ ଖବର ବିସ୍ତାରିତ ଭାବେ ଲେଖ । ନିଶ୍ଚେ ଲେଖିବ ।

ଏବେ କ'ଣ ପଢ଼ୁଛ ? କ'ଣ କରୁଛ ? କିଛି ଲେଖାଲେଖି କରୁଛ କି ? ସବୁ ଲେଖ ।

ରାଣୀ, ମତେ ଏତେ ଅପରାଧୀ ବୋଲି ଭାବନା । ମୁ ଚିରଦିନ ତମର ସେହି ସରଳ ପ୍ରାଣ, ପ୍ରେମିକ ପ୍ରିୟ୍ଟି । ତମର ଅବିଶ୍ୱାସ କରିବାର କିଛି କାରଣ ନାହିଁ । ତମର ଏ ଚିଠି ପାଇ ମୁଁ ପଢ଼ି ସାରିଲା ପରେ ସାଶ୍ରୁ-ନୟନରେ ବିଧାତାଙ୍କୁ ଧନ୍ୟବାଦ ଜଣାଇଲି—ମୋର ଏ ସୌଭାଗ୍ୟ ଲାଗି । ଲକ୍ଷ୍ମୀ ମୋର, ବାଗ୍ଦେବୀ ମୋର, ପ୍ରାଣର ଅନ୍ତରତମ ମୋର, ଏକମାତ୍ର ସଖା ମୋର, ଏ ଜୀବନ ତମର ବୋଲି ଜାଣି ରଖ । ଏତିକି ଖାଲି ମନେରଖ ଯେ, ତମର ଏହି ଅପଣାର ଲୋକଟି ବଡ଼ ଦୁର୍ବଳ, ବଡ଼ ଅଧମ, ବଡ଼ ଭାବ ପ୍ରବଣ—କେତେବେଳେ ସେ କ'ଣ ଭାବେ, କ'ଣ କରେ, ତା'ର ଠିକ୍ ନ ଥାଏ । ତା'ର ବେଠିକ୍ ଜୀବନକୁ ଠିକ୍ ବନେଇବାକୁ ତମେ ଅଛି ସରସ୍ୱତୀ ମୋର ! ମତେ ଶିଖା କର, ଶାସନ କର, କାନ ମୋଡ଼ । ସେ ଅଧିକାର, ସେ କର୍ତ୍ତବ୍ୟ ତମର, ତମର, ତମର ଲକ୍ଷ୍ମୀ ।

ଅନ୍ତରାତ୍ମା ଖାଲି ତମର ସୁନ୍ଦର ନାମ ଉଚ୍ଚାରଣ କରି ଉଠୁଛି··· ··· ···
···ପ୍ରାଣର ମଣି ମୋର—

ତମର
ପ୍ରିୟ୍ଟ ।



# ଅଗାଧ ଓ ଅନାବିଲ ସ୍ନେହସାଗର

କଟକ

ପ୍ରାଣର ଜ୍ୟୋସ୍ନା ମୋର,
ପରମ ସ୍ନେହର ସାନ ଭଉଣୀଟି ମୋର,
ପ୍ରାଣର ଲକ୍ଷ୍ମୀ ମୋର,

ପାଗ୍ଲି, ଏବେ କେଉଁ ଭଲ ଲାଗୁଛି ? ତମେ କ'ଣ ଜାଣୁନା ତମ ଚିଠି ମୋର କ'ଣ ? ତମ ଚିଠି ଯେଉଁଦିନ ଆସିବାର କଥା, ସେ ଦିନ ନ ଆସିଲେ, ସେ ଦିନ ଆଉ ମୋ ପ୍ରାଣରେ ଉତ୍ସାହ ନ ଥାଏ କି ଉତ୍ସବ ନ ଥାଏ । ମୋର ସେଦିନ ଗୋଟିଏ ଅଶୁଭ ଦିନ । କାଲି ଦିନଟା, ସେଇପରି ଅବୌ ଭଲରେ କଟିନି ।

ତମକୁ କେତେ ଆଉ ଚିଠି ଲେଖିଥିବି ? ଦେଖିବାକୁ ତ ମନ ପ୍ରାଣ ବିକଳ ହୋଇ ଉଠୁଛି । ସେଥିର ଉପାୟ ମିଳିବାକୁ ନାହିଁ । ଚିଠି କେତେ ଏମିତି ଲେଖିଥିବା ? ମତେ ଭାରି ବିରକ୍ତ ବୋଧ ହେଲାଣି । ତମକୁ ଓ ଅପାକୁ ଦେଖିବାକୁ ପ୍ରାଣରେ ଯେ କି ଉଚ୍ଛନ୍ନଭାବ, ମୁଁ କିପରି ବ୍ୟକ୍ତ କରିବି ? ଦିନର ନାନା କର୍ମଭିତରେ ମତେ ଏହି ବିଷୟ ବ୍ୟାପୃତ କରି ରଖିଛି । ଯଦି ଭୁଲି ଯାଇଥାଏ ତେବେ ଯେତେ-ବେଳେ ନିର୍ଜନରେ ଭାବି ବସେ, ଏ ବିଷୟ ଛୁରୀ ମାରିଲା ପରି ହୃଦୟରେ ବାଜୁଛି । ମୁଁ କ'ଣ ତମକୁ ଆଉ ଦେଖିବି ନି ? ଅପାକୁ ଦେଖିବି ନି ? ମତେ ଯେପରି ଜଣାପଡ଼ୁଛି ଆଉ ତମକୁ ସବୁ ଦେଖିବି ନି ଜୀବନରେ—ଏଇଠି ତମମାନଙ୍କଠୁ ଦୂରରେ ରହି, ସହାୟସମ୍ବଳହୀନ ହୋଇ କେତେବେଳେ ଆତ୍ମହତ୍ୟା କରି ମରିବି । ମନେ ହେଉଛି, ତମକୁ ଘଣ୍ଟାକ ପାଇଁ ହେଲେ କିଏ ଆଣି ଦିଅନ୍ତା—ଗୋଟିଏ ଆଲିଙ୍ଗନରେ ମିଳନ ଓ ବିଦାୟ ଶେଷ କରି ଛାଡ଼ିଦିଅନ୍ତି । ଲକ୍ଷ୍ମୀ, ଥରେ ଆସ—ମୁଁ ଟଙ୍କା ପଠାଇବି, ତମେ ଆସି ପାରିବ ?

କିପରି ଅଛ ପାଗ୍ଲି ? ସ୍ୱାସ୍ଥ୍ୟ କିପରି ଅଛି ? ଏ ସବୁ ଲେଖୁନା କାହିଁକି ? ମୁଁ ଜାଣିବା ଦରକାର ନାହିଁ ବୋଲି ଭାବୁଛ ନା ? ହିଁ, ଏବେ ତ କେତେ ଲୋକଙ୍କୁ ଜଣେଇବାକୁ ପଡ଼ିବଣି—ଆମକୁ ପଚରେ କିଏ ?

ଲେଖା ଲେଖି, ପଢ଼ାପଢ଼ି କରୁଛ ? କାହିଁ, କିଛି ତ କେବେ ପଚାରିଲନି, କି ଲେଖିଲନି, କି ଶୁଣେଇଲନି । ମତେ ଏତେ ଅନାଦର କରୁଛ କାହିଁକି କହିଲ ।

ମୋର ସ୍ୱାସ୍ଥ୍ୟ ଭଲ ଅଛି । ମୁଁ ଏବେ ଜଳ ଚିକିତ୍ସା ଆରମ୍ଭ କରିଛି । ଖଣ୍ଡେ ବହି କିଣିଛି । ଏକାଠି ହେଲେ, ତମକୁ ଏସବୁ ଶିଖେଇବି ବୋଲି ଭାବୁଛି । ତମେ କ'ଣ କରିବ ?

ଏବେ ପ୍ରତିଦିନ ଗୀତାପାଠ କରୁଛି ବାସ୍ମାଣୀ । ବଡ଼ ଭଲ ଲାଗୁଛି । ପଢ଼ିଲା-ବେଳେ ମନେହୁଏ ତମେ ବସିଥାନ୍ତ କି ପାଖରେ, ତମ ଛଡ଼ା ମୋର କୌଣସି କାର୍ଯ୍ୟରେ ଉତ୍ସାହ ନାହିଁ ପରା ! ଏକାଠି ହେଲେ, ତମକୁ ଗୀତା ବୁଝେଇବି ବୋଲି ଭାବୁଥାଏ । କିନ୍ତୁ ପ୍ରଥମେ ତମକୁ ସଂସ୍କୃତ ଟିକିଏ ପଢ଼େଇବାକୁ ହେବ ଦେଖୁଛି । ସେ ଛ'ମାସ ଭିତରେ ହେଇଯିବ । ପଣ୍ଡିତ ରଖିବା, ତା'ଠୁ ପଢ଼ିବ ନା ମୋଠୁ ପଢ଼ିବ ?

ତମେ ଥରେ ମତେ କବିତା ଲେଖୁଛି କି ନାହିଁ ବୋଲି ପଚାରିଥିଲ । କବିତା ଲେଖିବାର ମାନସିକ ଶାନ୍ତି ମୋର ନାହିଁ ବାସ୍ମାଣୀ । ମୁଁ ଲେଖି ପାରୁନି । ବଡ଼ ଦୁଃଖ ଆସୁଛି ସମୟ ସମୟରେ । ଏଇ ଦରିଦ୍ର ଓ ଦୁଃଖମୟ ଜୀବନରେ ସେ ଗୋଟିଏ ପରମ ଆନନ୍ଦକର ବ୍ୟବସାୟ ଥିଲା । ସେ ମଧ୍ୟ ଏ ଦାରିଦ୍ର୍ୟ ଯୋଗୁ ନଷ୍ଟ ହେବା ଉପରେ । ଛି ! ଏ ଜୀବନରେ ଆଉ କି ସାର୍ଥକତା ରହିଲା ହେମ ?

ରନ୍ଧାରନ୍ଧି କରୁଛ ? ଦୈହିକ ପରିଶ୍ରମ କିଛି କିଛି କରୁଥିବ । ନ ହେଲେ ସ୍ୱାସ୍ଥ୍ୟଭଙ୍ଗ ହେବ । ସେ ଔଷଧ ଖାଇଲ ନା ନାହିଁ । କ'ଣ ଫଳ ହେଲା ଲେଖ ।

ମୋ ଯୋଗୁ ତମେ ଅନ୍ୟମାନଙ୍କୁ ଭୁଲିଲ ବୋଲି କିଏ କିଏ ଅଭିଯୋଗ କରନ୍ତି, ଲେଖିବ କି ? ଲେଖ—ଲେଖିଲେ ମିଛ ସତ ବୁଝିବା ସିନା—ଖାଲି କହିଲେ, ଆମେ ମାନିଯିବୁ କ'ଣ ? ଆମକୁ ପିଲା ଦେଖି ଭୁଲଉଛ ପରା ନା ?

ଲକ୍ଷ୍ମୀ, ମୁଁ ବଡ଼ ଛୋଟ କଥାରେ ମାତେ ନା ? ଏ ଘଟଣାରେ ତମେ ମୋ ଉପରେ ବିରକ୍ତ ହୁଅ ? କ'ଣ ମନେକର ମତେ ଲେଖିବ କି ? ମୋର କିନ୍ତୁ ଧାରଣା ଏଇ ଛୋଟ ଛୋଟ କଥାରେ ସ୍ନେହ ବା ଅନାଦର ଯେପରି ଧରାପଡ଼େ । ମୋର ଧାରଣା ଯେ ଏକାବେଳକେ ଭୁଲ୍ ତା' ନୁହେଁ । କିନ୍ତୁ ତମର ଅଗାଧ ଓ ଅନାବିଲ ସ୍ନେହ ସାଗରରେ ଏ ଛୋଟ କାତ ସବୁ ହାସ୍ୟକର କଥା । ମୁଁ ମୋ ଭୁଲ୍ ବୁଝିଛି । ମତେ କ୍ଷମା କରିଛ ? ତମେ ମୋର କି ଦୋଷ କ୍ଷମା କରିନ ବାସ୍ମାଣୀ ! ଓଃ, ଏତେ ବଡ଼ ଅପଦାର୍ଥ, ପାପୀ, ଅପରାଧୀ, ଏ ମୂଲ୍ୟବାନ୍ ମାଣିକ୍ୟ ପାଇଲା କିପରି ?

ଘରୁ ଚିଠି ଚିଟି କିଛି ପାଇନି । ମୁଁ ଏଠି କିପରି ଜୀବନ ଯାପନ କରୁଥିବି, ଅନୁମାନ କରି ପାରୁଥିବ । ବଡ଼ ଏକାକୀ, ବଡ଼ ଅସହାୟ, ବଡ଼ ଦୀନ ହୀନ ଭାବରେ ମୋର ଦିନ ଯାଉଛି । ଓଃ, ତମେ ଯଦି ମୋ ପାଖରେ ଥାନ୍ତ—ତେବେ ସମସ୍ତ ଜଗତ ମୋ ପାଖରେ ଥାନ୍ତା । ସେଇ ଭାଗ୍ୟକୁ ମୁଁ ଅନେଇ ରହିଛି । ସେଦିନ କେବେ ଆସିବ ?

ଲକ୍ଷ୍ମୀ, ଧନ, ଗୃହ, ମଣି ମୋର, ଶୋଇଛ ନା ବସିଛ ? ଯେପରି ଅବସ୍ଥାରେ ଥାଅ, ଥରେ କହ 'ପ୍ରିୟ, ମତେ ଆଉ ତମେ ଭଲ ପାଉନା' ।

ଶୀଘ୍ର ଚିଠି ଦିଅ ।

ତମର
ପରମ ପ୍ରିୟ ।

ହଁ, ଲକ୍ଷ୍ମୀ,

D. Ed. ପରୀକ୍ଷାରେ ମୋର ପାଶ୍ ହୋଇ ଯାଇଛି । ମୋର ଭାରି ଭୟ ଥିଲା ମୁଁ ଫେଲ୍ ହୋଇଯିବି ବୋଲି—ମୁଁ କିଛି ପଢ଼ି ନ ଥିଲି ।



# ସାବର୍ତ୍ତୀର ପବନ ବନ୍ଦନା

ମେ ୧ । ୫ । ୧୯୩୭
ନିମାପଡ଼ା—ସ୍ୱଢ

ପ୍ରାଣର ପ୍ରାଣ ଅଭିମାନିନୀ ମୋର,
ପରମ ସ୍ନେହର ଲକ୍ଷ୍ମୀ ମୋର !

ପାଗ୍‌ଲି, ଏତେ ଦିନର ନୀରବତା ପରେ ଆଜ ତମର ହସ୍ତାକ୍ଷର ପାଇ ତମୁକୁ ପାଇଲା ପରି ଲଗିଲା । ଖସ୍ତବେଳେ ଏପଟ ସେପଟ ହେଉଥାଏ—ସବୁଦିନ ଡାକକୁ ଗୁହିଁ ତ ନିରାଶ ହେଇଥାଏ, ଆଜ କିନ୍ତୁ କେଜାଣି କାହିଁକି ପୁଣି ଆଶା କରି କାହାର ଭିତର ହେଉଥାଏ । ଶେଷରେ ୪୮ ଛ ୫ ବାଜିବା ଉପରେ ହେଲା; ବାହାରୁ ଗୁଲିଆସି ଘର ଭିତରେ ଚୌକି ଧାରରେ ମୁହଁ ମାଡ଼ି ବସିପଡ଼ିଲି । ଅନ୍ତରରୁ କୋହ ଉଠିଲା—'ଧନ, ସତେ ତମେ ଏଡ଼େ ନିଷ୍ଠୁର ।' ଠିକ୍ ଏଇ ସମୟରେ ଗୋଟିଏ ପିଲା ଖବର କାଗଜ ସହ ଚିଠି ଦିଓଟି ଦେଇଗଲା । ସଙ୍ଗେ ସଙ୍ଗେ ପଢ଼ିଲି ।

× × × ×

ନାଲି ସ୍ୟାହିରେ ଲେଖା ଚିଠିଟି ପାଇବଣି । ସେଥିରୁ ମୋର ବ୍ୟାକୁଳତା ବୁଝିଥିବ । × × × କି ଆଶଂକା, କି ଅଶ୍ରୁ, କି ବ୍ୟାକୁଳତାରେ ଦିନ କାଟିଛୁ ତମୁକୁ କ'ଣ ଲେଖିବି । ଥରେ ଥରେ ଅତ୍ୟନ୍ତ ସନ୍ଦେହ ହୁଏ ମଧ୍ୟ । କିନ୍ତୁ ମୋର ମନଶ୍ଚକ୍ଷୁ ଆଗରେ ସେତେବେଳେ ଭାସିଉଠେ ତମର ମାନସୀ ପ୍ରତିମା, ଅଗ୍ନିଶିଖା ପରି ଜ୍ୱଳନ୍ତ ଓ ପବିତ୍ର—ମତେ କହୁଛୁ ଯେପରି । ଛି, ପ୍ରିୟ, ଏସବୁ ମନରେ ଭାବନ୍ତ ?' ରାଗ ଅଭିମାନ ତ ଛାଡ଼; ଦିନେ ଦିନେ ଚିଠି ନ ପାଇ ଏତେ ବ୍ୟସ୍ତ ଲାଗେ ଯେ, ଗୁଡ଼ାଏ ଗାଳି ଦେଇଯାଏ । ତା'ପରେ ନିଜକୁ ବୋଧ ଦେବାପାଇଁ ଭାବେ, ସେ ତ ସ୍ୱାର୍ଥପର, ମୁଁ କାହିଁକି ତାଙ୍କ ପାଇଁ ଭାବି ଭାବି ମରୁଛି, ନାରୀକି ବିଶ୍ୱାସ ନାହିଁ ବୋଲି ଯାହା କହୁଛନ୍ତି, ତା' ଠିକ୍......ଏଇପରି କେତେ କ'ଣ; ବର୍ତ୍ତମାନ ସେ ସବୁ ମନେ କଲେ ହସ ଲାଗୁଛି ।

ଇନ୍‌ସ୍ପେକ୍ଟର ଆସିବ ବୋଲି ଗତ ମାସକ ଗଧ ଭଳିଆ ଖାଟିବାକୁ ପଡ଼ୁଛି । ଘୋର ଗରମରେ । ସେ ଖାଟିଣୀରେ ଆଉ କହିବାର ନାଁ । ଧରନ । ତମେ ତ ଜାଣ,

ମୁଁ ସକାଳେ ଯାହା ଲେଖେ । ବର୍ତ୍ତମାନ ସକାଳ ସ୍କୁଲ ହେଉ ସକାଳଟି ନଷ୍ଟ । ଏତେବେଳେ ଗରମରେ କି କବିତା ବାହାରେ ? ସ୍ୱାଧୀନତା ପ୍ରିୟ ଆବିସିନିସ୍ୱାବାସୀ, ବର୍ବର ଇଟାଲୀ ଦ୍ୱାରା ଯେପରି ଦଳିତ ହେଉଛି, ସେ କଥା ପ୍ରତିଦିନ ପଢ଼ି, ଭଗବାନ୍ କବିତା ଲେଖିବାକୁ ମୋର ମନ ଆଉ ଯାଉନି । ଏବେ ପ୍ରତିଦିନ ମୁଁ ପ୍ରାର୍ଥନା କରୁଛି କିପରି ଆବିସିନିସ୍ୱାର ଜୟ ହେଉ । ଜଗତରେ ସତ୍ୟର ଓ ଧର୍ମର ସମ୍ମାନ ରହୁ । ତା' ନ ହେଲେ ଆମେ ଦୁର୍ବଳ ଯଦି ସବୁବେଳେ ସବଳ ଦ୍ୱାରା ଅପମାନିତ ଓ ପଦଦଳିତ ହେବା, ତେବେ ଭଗବାନଙ୍କର ଜୟଗାନ କରି କି ଲାଭ ଆମର ? ନାଟକଟିରେ ଯାହା ସଂଶୋଧନ ଗଲେ କରିବା । ଇନ୍‌ସ୍ପେକ୍ଟର ପରେ ପରୀକ୍ଷା ଲାଗିଲାଣି । ସେଥିପାଇଁ ପ୍ରଶ୍ନ ତିଆରି, ପ୍ରଶ୍ନ ଛପା ଲାଗିବ । ତେଣୁ ମୋର ଆଜି ସମୟ ନାହିଁ । ଗୋକୁଳ ବାବୁ ( ଗୋକୁଳ ଶ୍ରୀଚନ୍ଦନ, ସଂଗୀତଜ୍ଞ, ) ଗୀତସ୍ୱରୂଚ କ'ଣ କଲେ ?

× × × ମେ ୮, ମନେ ରଖିଛ, ନା, ପାଶୋରି ଦେଇଛ ? ମୋ ରାଣ, ସେଦିନ ଯେପରି ମୁଁ ଖଣ୍ଡେ ଚିଠି ପାଏ—ବର୍ଷଟି ଯାକ ଶୁଭରେ କଟିବ । ମୁଁ ବି ଦେବି ଯେ । କବି ଲକ୍ଷ୍ମୀ କବିତାଟି ଆଜିବି କଟାକଟି କରି ନୂଆ କରୁଛି । ସେଇଦିନ ପଠାଇବି ଭାବୁଛି । ଏହି ଶୁଭ ବାସରରେ ତେବେ ତ ଏକାଠି ହୋଇ ପାରିଲେନି ! କିନ୍ତୁ ଏ ବର୍ଷ ସାବିତ୍ରୀ ଉପବାସକୁ, ଏ ଅଧମ ତାର ସାବିତ୍ରୀର ପବିତ୍ର ବନ୍ଦନା ପାଇବ ବୋଧହୁଏ । ପାଗ୍‌ଲି ମୋର, ସବୁ ଅଭିମାନ ଗୁଡ଼ା ପଠା ଦିଅ ।

। ଇତି ।

ପ୍ରିୟ ।



# ଏ ଜନ୍ମର ଆର ପଟେ

ନମାପଡ଼ା
୯ । ୬

ପ୍ରାଣର ବାସ୍ସାଣୀ,

ଚିଠିଟି ତମର ପଢ଼ୁ ପଢ଼ୁ ଅଶ୍ରୁସିକ୍ତ ହୋଇଗଲି । କି ଆଶୀର୍ବାଦ ମାଗିଲ ପାଗ୍‌ଲି ? ମୁଁ ଅଧମ, ତମକୁ ଆଶୀଷ ଦେବାର ଯୋଗ୍ୟତା କ'ଣ ଅଛୁ ? ବୁଦ୍ଧି, ଖ୍ୟାତି, ଚରିତ୍ର, ଗୁଣରେ ମୁଁ ତମର କେଉଁଠିକି ଆସେନି, ତମକୁ ଆଶୀର୍ବାଦ ଦେବି କ'ଣ ? ମୋର ବହୁଭାଗ୍ୟକୁ ମତେ ଅପାର ପ୍ରେମରେ ପ୍ଲାବିତ କରୁଛ, ତମର ଅନୁକଂପା ହେଲେ କେଜାଣି ଏ ଜନ୍ମର ଆରପଟେ, ଏହି ସ୍ନେହ ଉପଭୋଗ କରିବାର ଭାଗ୍ୟ ପାଇପାରେ । ନଚେତ୍ କି ଅଧିକାରରେ ମୁଁ ତା' ଦାବୀ କରିବି ଧନ କହିଲ ?

ଧନ, କାଲି ଗୋଟିଏ ପ୍ରସିଦ୍ଧ ଜ୍ୟୋତିଷୀ ଏଠାକୁ ଆସିଛି । ମୋର ଓ ତମର ଜାତକ ଦେଖେଇଲି । ମୋ ଜାତକ ଦେଖି ସେ ଲୋକଟା କୃତକୃତ୍ୟ ହୋଇଗଲା— କହିଲା, ଏତେ ରାଜାମାନଙ୍କ ଜାତକ ଦେଖୁଛି, ଏମିତି କେବେ ଦେଖିନି । ମୁଁ ସେଥିରେ ଟିକେ ହେଲେ ବିଚଳିତ ହେଲିନି । ସେ ଅବଶ୍ୟ କେତେଟା ସତ୍ୟକଥା କହୁଛି । ଏଠା ପୋଷ୍ଟମାଷ୍ଟରଙ୍କ ଜାତକ ସାଧି ଦେଇଛି ସେ । ସବୁ ଠିକ୍ ଠିକ୍ ଘଟି ଯାଉଛି । ସେ ନିର୍ଭର ଜବାବ ଦେଲା ଯେ, ଆଶ୍ୱିନ ଏଇପଟେ ତମର ନିଶ୍ଚୟ ଗର୍ଭୋଦୟ ହେବ । ପ୍ରଥମ ଗର୍ଭରେ ଭାଗ୍ୟବାନ ବାଳକ ସନ୍ତାନ ହେବ । ତା' ଯଦି ହୁଏ ତେବେ ଆମର ପ୍ରସ୍ତୁତ ହେବା ଉଚିତ । ମୁଁ ଗଲେ ମତେ ଅକାରଣ ଖର୍ଚ୍ଚ ହାତରୁ ରକ୍ଷା କରିବ । ଏ ସମ୍ବାଦ ଶୁଣି, ପାଗ୍‌ଲି ତମର ଛାତି କ'ଣ ହେଇ ଯିବଣି । ଆ, ପାଗ୍‌ଲି, ଛାତିକି ଆଉଜାଇ, ମୁଁ ବାହୁ ବଂଧନ ଭିତରେ ଆଶ୍ରୟ ଦିଏ ।

କିନ୍ତୁ ସେ କହୁଛି, ଶେଷ ଜୀବନରେ ତମେ ପ୍ରଦରାଦି ରୋଗରେ କଷ୍ଟ ପାଇବ । ଏବେ ଗୋଟେ ଆୟୁର୍ବେଦ ବହି ପଢ଼ି ଦେଖିଲି ଯେ ଋତୁସମୟରେ ସ୍ନାନାଦି ଓ ଉତ୍ତେଜନାର କଥା କଲେ ପ୍ରଦରାଦି କୁସାରୋଗ୍ୟ ରୋଗ ହୁଏ । ତମେ ତ ଝିଅଲୋ । ମୋ କଥା ତ ଶୁଣିବନି, ଟିକିଏ ହିନ୍ଦୁସ୍ଥରେ ଚଳ । ପୂର୍ବେ ଆମ ଘରମାନଙ୍କରେ

ଏହି ବିଷୟରେ ଚଳ ପ୍ରଦର କ'ଣ ଜାଣୁ ନ ଥିଲେ ଯେ ! ସେ ଆୟୁର୍ବେଦ ବହିଟି ମୁଁ ତମେ ପଢ଼ିବା ପାଇଁ ନେଇଯିବ ।

ତୀର୍ଥଯାତ୍ରାର କଥା ମଧ୍ୟ ସେ କହିଲା । ଆଶ୍ୱିନ ଆଡ଼କୁ ହେବ ବୋଲି । ଆଉ କହିଲା, ବିମାପତ୍ରାରେ ଆଉର ୨୧ ବର୍ଷ ରହିବାକୁ ହେବ । ଦେଖାଯାଉ କ'ଣ ହେଉଛି । ପରମ କଲ୍ୟାଣମୟ ଭଗବାନ ହିଁ ଦୁଇଟି ସରଳ ପ୍ରାଣର ଏ ଜଟିଳ ପଥରେ ସହାୟ ।

ମଉସାଙ୍କୁ କହିବ, ସେ ବୁଝିବେ ପାରଳାଖେମେଣ୍ଡିରେ ଏହି ଜୁଲାଇରୁ କଲେଜ ଖୋଲୁଛି କି ନାହିଁ ଓ ମୋର ଯିବାର କି ସମ୍ଭାବନା ସେ ସନ୍ଧାନ ନେବେ ।

ପାଠ୍ୟପୁସ୍ତକ ଲେଖା ଓ ପରୀକ୍ଷାରେ ବଡ଼ ବ୍ୟସ୍ତ ।

ତୁମର ଆଲିଙ୍ଗନ ନିଏ ପାଗଳି ଓ ବହୁଦିନ ପରେ ଗଣ୍ଡରେ ଦୁଇଟି ନିବିଡ଼ ଚୁମ୍ବନ ନିଏ ।

ଚିଠି ଦିଅ ।

ତୁମର
ଅଧମ ପ୍ରିୟ ।



## ଜାତୀୟତା ପ୍ରଚାର

ଜାମସେଦ୍‌ପୁର
୨୨-୬-୩୨

ପ୍ରାଣର ପରମ ସାନ୍ତ୍ୱନା ମୋର,
ଜନ୍ମ ଜନ୍ମାନ୍ତରର ଲକ୍ଷ୍ମୀ ମୋର,

ପାଗ୍‌ଲି, ଏକାକୀ ରହି କେତେ କାନ୍ଦୁଛ, ମୁଁ ଘରୁ ନଥିବ ବୋଲି କେତେ ନିଜକୁ ଧିକ୍‌କାର ଦେଉଛ, କେତେ ନିଜ ଭାଗ୍ୟକୁ ନିନ୍ଦା କରୁଛ, ପ୍ରାଣର କାଯ୍ୟାଣୀଟି ମୋର, ଅଧୀରା ହେଉନ। ଆସିଲାବେଳକୁ ତ ତେଇ ତ ଯାଉଛି । ସବୁଥର ତତେ ଛାଡ଼ି ଏକା ଏକା ଆସେ ବୋଲି ନୀରବରେ ଅଶ୍ରୁପାତ କରି ସୁଖ ପାଏ । ଏଥର ମୋ ସଙ୍ଗେ ସଙ୍ଗେ ଲୋକ ତ ଲାଗି ରହିଛନ୍ତି, ଅଶ୍ରୁପାତ ନ କରି ପାରି, ଗୁପ୍ତ ଦଗ୍ଧ ହେଉଯାଉଛି । ତୁ ଆସିଥିଲେ ସିନା କାରଖାନା ଦେଖିଥାନ୍ତୁ । ତୁ ନ ଆସିବାରୁ ମୋର ଆଦୌ ଉତ୍ସାହ ହେଲାନ, ପାଣ୍ ଅଣା ହେଲେ ମଧ୍ୟ, ନାହିଁ କରି ଦେଲି । ତୁ ସାଥିରେ ଆସିଲେ ପୂଜାରେ ଦେଖିବାକୁ ଏମାନଙ୍କୁ କହିଲି । ଏମାନଙ୍କର ଆଦର ଅଭ୍ୟର୍ଥନା ଖୁବ୍ । ଶ୍ରୀକୃଷ୍ଣ ବାବୁଙ୍କୁ କାଲି ଦେଖିଲି; ଭାରି ଖୁସି ହେଲେ ମତେ ଦେଖି । ମାୟା ଓ ଲକ୍ଷ୍ମୀ ଉଭୟେ ତାଙ୍କ ସାଥିରେ ଅଛନ୍ତି, ତାଙ୍କ ସ୍ତ୍ରୀ ଟାଟାରେ । ମାୟା ଏସ୍ରାଜ୍‌ରେ ଗୋଟିଏ ସୁନ୍ଦର ଭଜନ ଗାଇଲା । ପ୍ରଥମରୁ ତାର ଯତ୍ନରେ ଶିଖିଥିଲେ ଟମେର ବଡ଼ ଭଲ ହୋଇଥାନ୍ତା । ମାୟା ଏସ୍ରାଜ୍ ଦେଇ ଆରମ୍ଭ କରିଛି ଶୁଣିଲି ।

ଆମେ ଆଜ ଗ୍ୱଲି ଯିବାକୁ ବଡ଼ ଉତ୍ସୁକ । କିନ୍ତୁ ଏମାନେ ଛାଡ଼ିବାକୁ ଏକାନ୍ତ ନାରାଜ । କାଲି ଏମାନେ ସଭା କରି ମତେ ବକ୍ତୃତା କରେଇବାର ଆୟୋଜନ କରୁଛନ୍ତି ବୋଲି ଶୁଣୁଛି । ଏସବୁ ଜଞ୍ଜାଳ ନହେଲେ ରକ୍ଷା । ଏଠାରେ ୧୦ ହଜାର ଓଡ଼ିଆ ଅଛନ୍ତି, କିନ୍ତୁ ସମସ୍ତେ ମୂଲିଆ ଶ୍ରେଣୀର । ଯେବା ଭଦ୍ରଲୋକ ଶ୍ରେଣୀର ଅଛନ୍ତି, ସେମାନେ କୁଳିଭଳି ରହନ୍ତି । ଓଡ଼ିଆ, ଯେ କେତୋଟି ଶିକ୍ଷାଦୀକ୍ଷା ପାଇ ଅଛନ୍ତି, ସେମାନଙ୍କର ଏକତା ନାହିଁ । ଗୋପବନ୍ଧୁଙ୍କ ଶ୍ରାଦ୍ଧ

ଅବସରରେ ମୋଟେ ୧୫ଟି ଲୋକ ଉପସ୍ଥିତ ଥିଲେ । ଏହା ଗୋପବନ୍ଧୁଙ୍କ ପ୍ରତି ଭକ୍ତି ଅଭାବର ଚିହ୍ନ ନୁହେଁ, ଦଳଗତ ଓ ବ୍ୟକ୍ତିଗତ ବିଦ୍ୱେଷର ଫଳ । କିମାପଡ଼ା ପରି ଜାଗାରେ ୨୧ ଖଣ୍ଡ 'ସମାଜ' ବିକ୍ରୀ ହୁଏ, ଅଥଚ ଏଠି ୩୦ ଖଣ୍ଡ ହେଇ ପାରେକି ନା ସନ୍ଦେହ । ତମେ ଖଇରଙ୍ଗପୁରରେ 'ସମାଜ' ପ୍ରଚାର କରିବାର ଚେଷ୍ଟା କରିବ । ଯେ ଯେଉଁଠି ରହିବା, ସେଠି ଜାତୀୟତା ପ୍ରଚାର ନ କଲେ, ଜାତିର ମୁକ୍ତି ସୁଦୂର ପରାହତ ହେବ । ତମେ ଯଦି ଏ ଦିଗରେ କିଛି ନ କର, ଆଉ କାହାକୁ ଆଶା କରିବା ? ନିଜେ 'ସମାଜ' ମ୍ୟାନେଜର ପାଖକୁ ଚିଠି ଲେଖି ସବୁ ବନ୍ଦୋବସ୍ତ କରିବ । ପୁରୀ ଶାସନ ଅଞ୍ଚଳର ଗୋଟିଏ ୧୩ ବର୍ଷର ବାଳିକାବଧୂ ଚୁଲି ପାଖରେ ବସି ୩।୪ ଖଣ୍ଡ କାବ୍ୟ ଲେଖି ସାରିଲେଣି, ନିଜେ ଅନ୍ତଃପୁରରୁ ଚିଠି ଲେଖି ଏମାରମଠ ମହନ୍ତଙ୍କଠୁଁ ବହି ଆଣି ପଢ଼ୁଛି ଓ ଓଡ଼ିଶାର ଭିନ୍ନ ଭିନ୍ନ ରାଣୀଙ୍କ ନିକଟକୁ ପତ୍ର ଲେଖୁଛି । ଆଜି ଏ ଅଦ୍ଭୁତ କାହାଣୀ, ମୋର ଜଣେ ପରିଚିତ ପଣ୍ଡିତଙ୍କଠୁଁ ଏଠି ଶୁଣିଲି । ଅଥଚ ତା'ର ସ୍ୱାମୀ ୪ଥରରେ ମାଇନର୍ ପାଶ୍ କରିଛି । ତମେ ତମର ଉନ୍ନତି ଲାଗି ମତେ ସବୁବେଳେ ଦୋଷ ଦେଉଛ, କିନ୍ତୁ ତମେ ଜାଣନା ନିଜର ଉନ୍ନତି କେବଳ ନିଜ ହାତରେ । ମୁଁ ଏଥିପାଇଁ ତମ ଉପରେ ଅସନ୍ତୁଷ୍ଟ, କିନ୍ତୁ ତମେ ମତେ ଆଦୌ ନବୁଝି ବିରକ୍ତ ହେଉଛ । ପରେ ଚିଠି ଦେବି । ଇତି ।

ପ୍ରିୟ ।



# ପ୍ରେମର ପଥ ବିଷମ

ଗୁରୁବାର ୨୭ । ୨

ପ୍ରାଣର କରଙ୍କିସ୍ନା,

ପରମ ପ୍ରେମର ବାସ୍ନାଣୀ ମୋର,

ଧନ, ତମ ପଦତଳେ ତ ସବୁବେଳେ କରଯୋଡ଼ି ଠିଆ ହୋଇ ମଧ୍ୟ କ୍ଷମା ହେଉନ, ଆଜି କ'ଣ ଲେଖିବାକୁ ରଖିଛ କହିଲ ! ମୋର ମଧ୍ୟ ଏ ଭିତରେ ଏତେ ଅର୍ଥାଭାବ ହୋଇଛି ଯେ, ଟିକଟ କିଣିବାକୁ ପଇସା ନଥିଲା । ଏ ଚିଠି, ତମେ ସେହି କେତୋଟି ପଇସା ମୋ ରୁମାଲ୍‌ରେ ବାନ୍ଧି ଦେଇଥିଲ, ତାକୁ ସେଇମିତି ସାଇତି ରଖିଥିଲି, ସେଇ ପଇସାରେ ଟିକଟ କିଣି ଦଉଛି । ଆଉ ମାସ ଆରମ୍ଭରେ ବୋଧହୁଏ ଦାରିଦ୍ର୍ୟ ଘୁଞ୍ଚିବ । ପଇସା ନ ଥିବାରୁ ଭଲ ତେଲ କିଣି ପାରୁ ନ ଥିଲି, ତେଣୁ ମୁଣ୍ଡ କ'ଣ ହେଉଛି ସବୁବେଳେ । ଏବେ ଗୋଟେ କଳଦାନ୍ତ କାହିଁକି ବିନ୍ଧୁଛି । ଏଇପରି ନାନା କାରଣ ଭିତର ଦେଇ ମୁଁ ନୀରବ ରହିବାକୁ ବାଧ୍ୟ ହୋଇଥିଲି । କିନ୍ତୁ ଆଜି ଭାବିଥିଲି ତମ ଚିଠି ନିଶ୍ଚେ ପାଇବି, ପାଇଲି । ଆଜି ଗାଧୋଇ ପ୍ରାର୍ଥନା କଲାବେଳେ, ଅନେକ ଦିନ ପରେ ତମେ ମନେ ପଡ଼ି ମୋ ଆଖିରୁ ଲୁହ ବହିଲା । ଅନେକ ଦିନ ପରେ ମୁଁ ଉଣ୍ଣିରଥିବା ତମର ଚିଠିଗୁଡ଼ିକ ସାଧୁବାବୁଙ୍କଠାରୁ ରତ୍ନାକରଙ୍କ ଭାଇଙ୍କ ଦ୍ୱାରା ଅଣାଇ ଆଜି ପାଇଲି । ତେଣୁ ଆଜି ମୋ ପକ୍ଷରେ ଏକା ସୌଭାଗ୍ୟର ଦିନ । ରତ୍ନାକରଙ୍କ ଭାଇ, ଖୋରଧା ଫାର୍ମର ସୁପରଭାଇଜର— ବେଶ୍ ଭଲ ଲୋକ, ଏ ଭିତରେ ତାଙ୍କ ସଙ୍ଗେ ବେଶ୍ ମୈତ୍ରୀ ହୋଇଛି— ପୂର୍ବେ କେବଳ ଆଳାପ ଥିଲା । ଭାବିଛି ତାଙ୍କୁ ଖରାଦିନେ ଗାଁକୁ ନେଇଯିବି— farming ପାଇଁ ପରାମର୍ଶ ଦେବାକୁ । ସେ ମଧ୍ୟ ମଙ୍ଗିଛନ୍ତି । ସେ ଏ ଚିଠିଗୁଡ଼ିକ ପଢ଼ି ବଡ଼ ଉତ୍ସାହିତ ହୋଇ ପ୍ରକାଶ କରିବାକୁ କହିଛନ୍ତି । କିନ୍ତୁ ସେ କହନ୍ତି ଯେ, ଯଦି ମୋର ଚିଠି ସେଥିରେ ନ ରହେ ତେବେ ବହିଟା ଅପୂର୍ଣ୍ଣ ରହିଯିବ । ବହିଟା ଶୀଘ୍ର ପ୍ରେସକୁ ଦେବା ମୋର ଇଚ୍ଛା । ତମର ମତ କ'ଣ ? ମୋର କେତୋଟା ଚିଠି ବାଛି ଦିଅ ତ—ଯେଉଁଥିରେ ବ୍ୟକ୍ତିଗତ ପ୍ରେମ ଛଡ଼ା, ଉଚ୍ଚତର ଜୀବନର ଆଭାସ ଥିବ । ତମର ପ୍ରତିଭା, ଦେଖୁଛି, ପ୍ରେମ ଓ ପ୍ରେମ ପତ୍ରରେହିଁ ଶ୍ରେଷ୍ଠ ବିକାଶ ପାଇଲା । କେବଳ ଦୁଃଖର କଥା ଯେ, ଏତେ ବଡ଼ ପ୍ରେମ ଗୋଟେ ଅପଦାର୍ଥ ହାତରେ ଯାହା ପଡ଼ିଲା । ନାହିଁ ଧନ ? ଓଠ ଟିକିଏ ଧରି ଅନାଏ ମୁହଁଟିକି..........

ଧନ, ମୁଁ ସବୁ ଭୁଲି ଯାଇଛୁ । ଯାହା କହୁଛ ମନେ ତା' ତମ ଭୁଣ୍ଡରେ ବଡ଼ ଅଶୋଭନୀୟ । କିନ୍ତୁ ମୁଁ ତା' ଶ୍ରୀବତ୍ସ-ଲାଞ୍ଛନ ପରି ବକ୍ଷରେ ବୋଲି ଦେଉଛୁ । ପ୍ରାଣର ଶତଳତ ସମ୍ପଦ ଦେଇ ଯାହାକୁ ହୃଦୟରେ ଥରେ ଆଉଜାଇଛୁ, ତାକୁ ଦୂର କରିବି କିମିତି ? ଗତ ମାସର ଏହି କଳି, ଏହି ମାନ ଅଭିମାନ, କଠୋର ବାକ୍ୟ-ବ୍ୟବହାର ପରେ, ତମେ ମୋର ଯେପରି ଅତ୍ୟଧିକ ପ୍ରିୟ ହୋଇ ଉଠିଛ । ପ୍ରେମର ପଥ ତ ଚିରକାଳ ବିଷମ ଧନ,— ତମର ବିଚଳିତ ହେବାର କାରଣ କିଛି ନାହିଁ । ମୋର ଆଶା ତମେ ଯଦି ପ୍ରକୃତ ସ୍ନେହ ଦେଇଥାଅ, ତେବେ ମୋର ଅପରାଧ ସତ୍ତ୍ୱେ ଓ ଅପରାଧ ଯୋଗୁଁହିଁ ମୁଁ ତମର ଆହୁରି ପ୍ରିୟତର ହେବି । ସତ କହିଲ ଧନ—ଏକଥା କ'ଣ ସତ ନୁହେଁ ?

ମନେ ହେଉଛି ଯେପରି କେତେ ବର୍ଷ ହେଲା ତମକୁ ଦେଖିନି । ଏମିତି କେତେ ଦିନ ଯିବ ଧନ ? ଦୋଳ ପାଇଁ ଆମ ସ୍କୁଲ ୭ ତାରିଖ ଦିନ ବନ୍ଦ ହେବ । ଚଣ୍ଡୀ ମିଶ୍ର—ପ୍ରଭୃତି କୁ ନେଇ ପୁରୀରେ ପ୍ରଗତିର ଗୋଟେ ମିଳନ ହେବାର ଉଦ୍‌ଯୋଗ ହେଉଛି । ଛୁଟି ହେଲା କ୍ଷଣି ମୁଁ କଟକ ଯାଇ, ତହିଁ ଆରଦିନ ତମକୁ ପୁରୀ ନେଇଯିବି । କଟକରେ ରହିବାର ଅସୁବିଧା,—ତୁମକୁ ଏତେ ଦିନର ବିରହ ପରେ କିଛି ଦିନ ପାଇଁ ମୁକ୍ତ ଭାବରେ ପାଇବି ନି ? ମୋର ଆଶଙ୍କା ତମେ ମଙ୍ଗିବନି, ତାହା ହେଲେ ମୁଁ କୁଆଡ଼େ ଯିବି ?

ଇତି ମଧ୍ୟରେ ମୋର ପ୍ରାଣପ୍ରିୟ ଲକ୍ଷ୍ମୀର ଗୋଟେ ଅନୁରୋଧ କରି ପାରୁଛି— ମୋର ଆନନ୍ଦ ସେଥିଲାଗି, ଦୁଃଖ ମଧ୍ୟ । ଏଇନେ କିଛି କହିବି ନି । ୭ ତାରିଖ ଦିନ ରାତିରେ ଭେଟ ହେଲା ବେଳେ ମୋଠୁ ପ୍ରଥମ ଉପହାର ରୂପେ ତା' ପାଇବ ।

୩/୪ ତାରିଖ ମାର୍ଚ୍ଚ ତ ଭୂମିକମ୍ପ ହେବାର ସମ୍ଭାବନା । କିଏ ମରୁଚ, କିଏ ବଞ୍ଚୁଛ ଦେଖ । ତମକୁ ସାବଧାନ ହେବାକୁ କ'ଣ କହିବି ? କିନ୍ତୁ ମୋର ଦୃଢ଼ ବିଶ୍ୱାସ, ଆମ ଭିତରୁ ଯିଏ ଆଗ ମରୁନା କାହିଁକି, ସେ ଅନ୍ୟର ଆଲିଙ୍ଗନ ଭିତରେ ହିଁ ମରିବ । ସବୁ ଶକ୍ତିଠାରୁ ଜଗତରେ ପ୍ରେମର ଶକ୍ତି ତ ଶ୍ରେଷ୍ଠ—ଦେଖାଯାଉ । ମୁଁ ଏବେ ବେଶ୍ ପରିମାଣରେ ଈଶ୍ୱର ପରାୟଣ ହୋଇଯାଇଛି, ଧନ ।

ଶୀଘ୍ର ଚିଠି ଦେବ ।

ତମର
ପ୍ରେମିକ
ପ୍ରିୟ ।



# ମୁ କ'ଣ ପ୍ରିୟଜନ ?

ଭବାନୀ ପାଟଣା,
୧୮ । ୮ । ୩୭
ମଙ୍ଗଳବାର, ୯ଟା ଦିନ

ପ୍ରାଣର ପରମ ସାଥି ଲକ୍ଷ୍ମୀ ମୋର,
ପ୍ରାଣର ପ୍ରାଣ କାମ୍ୟାଣୀ ମୋର,
ପାଗ୍‌ଲି ଧନଟି ମୋର୍,

ଲକ୍ଷ୍ମୀ, ଏଠାରେ ଆସି ଆଜ ସକାଳେ ପହଁଚିଛି । ଖୋର୍ଦ୍ଧାରେ ସକାଳ ପାଞ୍ଚଟାରେ ଗାଡ଼ି ଧରିଲି ଯେ, ଏଠି ଆସି ତହିଁ ଆରଦିନ ସକାଳ ପାଞ୍ଚଟାରେ ପହଞ୍ଚିଲି । ବାଟରେ ବିଜୟନଗ୍‌ରାଂ ଠାରେ ଘଣ୍ଟେ ଖଣ୍ଡେ ବିଶ୍ରାମ ମାତ୍ର । ନଚେତ୍ ଅନବରତ ଗାଡ଼ି ଚାଲିଛି । ଏଥିରୁ କେତେ ଦୂର ଏ ଜାଗା ରୁ ବୁଝିପାରୁଥିବୁ । ଆଜ୍, ଦୁଃଖମୟ ଜୀବନର ଏକମାତ୍ର ଅବଲମ୍ବ ବନ୍ଧୁଜନଙ୍କୁ ବହୁ ଦୂରରେ ପରିତ୍ୟାଗ କରି, ଏଠି ଅଜଣା ବନ୍ଧୁଶୂନ ରାଜ୍ୟରେ ମୁଁ କିପରି ନିରାଶ୍ରୟ ଅନୁଭବ କରୁଥିବି ତା' ରୁ ସହଜରେ ବୁଝିପାରୁଥିବୁ । ବିଶେଷତଃ ତୋ' ଲାଗି ପ୍ରାଣ କିପରି ବ୍ୟାକୁଳ ହେଉଛି, ତୁଇ ଏକା ଜାଣିବୁ । କାରଣ, ବହୁ ଦୂରକୁ ଚାଲି ଆସିବାରୁ ପ୍ରିୟ ପ୍ରତି ତୋର ଆକର୍ଷଣ ତୀବ୍ର ହୋଇ ପଡ଼ିଥିବ ବୋଲି ମୁଁ ଆଶା କରେ । କିମ୍ବା, ତୋର କି ଆକର୍ଷଣ ? ତମର ଯେ ବାପା-ମା-ଭାଇ ଘେରି ରହିଛନ୍ତି । ମୁଁ କ'ଣ ପ୍ରିୟଜନରେ ଲେଖା ଗୋଟେ ? ମୁଁ ନିକଟରେ ଥିଲେ ବା ଦୂରକୁ ଗଲେ ଯାଏ କେତେ ଆସେ କେତେ ? ଥରେ କହିଥିଲୁ 'ଚାକିରି ତ କରିବ, ବାଛି-ବିଚାରି କରିବ କାହିଁକି ?' ମୁଁ ଅଭିମାନ କରିଥିଲି । ଆଜ କଳ୍ପ କାର୍ଯ୍ୟରେ ପରିଣତ କରିଛି । ମୁଁ ମରେ, ଜୀବନ ସଂଗ୍ରାମରେ ଦଳିତକଟି ହୋଇ ମୁଁ ମରେ—ମୋର ମାଂସ ଶାଗୁଣା ଖାନ୍ତୁ—ତୁ ସେ ଦୃଶ୍ୟ ଠିଆ ହୋଇ ଦେଖିଲେ, ତୋ'ର ଯାଇ ଉପଯୁକ୍ତ ଶାସ୍ତି । ଭଗବାନ ସେଇଆ କରନ୍ତୁ ।

ସମସ୍ତ ସମୟରେ ମନ ହେଉଛି ଫେରିଯିବାକୁ—ଯିବି କୁଆଡ଼େ ? କାହା ପାଖକୁ ଗଲେ, କିଏ ଏ ସ୍ୱାର୍ଥପର ଜଗତରେ ମତେ ସ୍ଥାନ ଦେବ ?

ଆଶା କରେ ତମେ ମୋ ପୂର୍ବ ପତ୍ରର ଉତ୍ତର ଦେଇଥିବ । କାରଣ ମୁଁ ତାକୁ ଚାତକ ପରି ଅନେଇ ରହିଛି । ସେ ପତ୍ର ପାଇଲେ ମୁଁ ପୁଣି ଚିଠି ଦେବି । ଭୟାନକ କ୍ଲାନ୍ତ ହୋଇଛି, ଦୀର୍ଘ ରେଲ-ଯାତ୍ରାରେ । ସ୍କୁଲରୁ ଛୁଟି ଆଣିଛି ଶୋଇବା ଲାଗି । ମୁଣ୍ଡ ମାଡ଼ି ହୋଇ ପଡ଼ୁଛି । ଯାଏ ।

ତମର ପ୍ରିୟ ।

## ଦରିଦ୍ର ଜନ୍ମ ଅଭିଶାପ

ଭବାନୀ ପାଟଣା
୨୮ । ୮ । ୩୬
ଶୁକ୍ରବାର

ପ୍ରାଣର ପାରୁଲଟି ମୋର,

ତୁ ଏତେ ବ୍ୟସ୍ତ ହେଉଛୁ, ମୁଁ ବି ତୋଠୁ କମ୍ ବ୍ୟସ୍ତ ହେଉନି । ଜୀବନ ସଂଗ୍ରାମରେ ପଡ଼ି ମୁଁ ଦୂର ଦେଶରେ ବନ୍ଦୀ ରହିଛି । ନ ହେଲେ ଦୁହେଁ ଜନ୍ମଭୂମିର ଏକ ଏକ ପ୍ରାନ୍ତରେ ରହି କାହିଁକି ମିଳନ ଲାଗି ହାହାକାର କରୁଥାନ୍ତେ ! ମୋତେ ତୁ ଅଭିଶାପ ଦେଉଛୁ କଷ୍ଟ ପାଇବାକୁ ? ଇମିତି ଭଲ ପାଉ ପରା ! ମୋ କଷ୍ଟ ତୁ ଜାଣିନୁ କି ? ମୋ ମନ ଏଠି ଆଦୌ ଲାଗୁନି । ଖିଆଲ୍‌ରେ, ଖାଲି ପରିବର୍ତ୍ତନ ଲାଗି, ଏଠିକି ଚାଲି ଆସିଲି । କିନ୍ତୁ ମନ ଆଦୌ ମାନୁନି ଏଠି । ସବୁବେଳେ ମନେ ହେଉଛି ଯେପରି ମୁଁ ଜଣେ ଲୋକର ଅଧୀନରେ—ମୋର ସକଳ କାର୍ଯ୍ୟରେ ଦେଖି-ବାକୁ ପଡ଼ୁଛି ସେ ଲୋକ ସନ୍ତୁଷ୍ଟ ହେବ କି ନାହିଁ । ମୋଗଲବନ୍ଦୀର ସ୍ୱାଧୀନ ବାୟୁ ଗ୍ରହଣ କରି, ଏହି ବନ୍ଧନ ଆଦୌ ଭଲ ଲାଗୁନି । ନିମାପଡ଼ାରେ ପିଲାଙ୍କ ସଙ୍ଗେ ସ୍ୱାଧୀନ ଭାବରେ ଗପସପ କରି ପାରୁଥିଲି, ଦେଶର ଭବିଷ୍ୟତକୁ ସେମାନେ କିପରି ଗଢ଼ି ପାରିବେ ତାହା ପ୍ରେରଣା ଦେଇ ବୁଝେଇ ପାରୁଥିଲି । ଏଠି ତ ସେ ସବୁ କିଛି କରି ପାରିବିନି । ବଡ଼ ଖରାପ ଲାଗୁଛି ତେଣୁ । କେବଳ ଟଙ୍କା ଛଡ଼ା ଏଠି ଅନ୍ୟ କୌଣସି ଲାଭ ନାହିଁ । ତେବେ ଟଙ୍କା ପାଇଁ ଲୋକକୁ ଅନେକ କିଛି କରିବାକୁ ପଡ଼େ । ନୁହେଁ ? ଜଗତରେ ଦରିଦ୍ର ହୋଇ ଜନ୍ମ ହେବା ପରି ଅଭିଶାପ ମନୁଷ୍ୟର ଆଉ ଦ୍ୱିତୀୟ ନାହିଁ । —ଲାଗି ମୋ ପ୍ରାଣ ମଧ୍ୟ ବ୍ୟଥିତ । ସେ ମୋର ଶତ୍ରୁ କାହିଁକି ହେବ ବା ସାନ୍ଦାଣୀ ? ତମର ସମ୍ପର୍କ ହେତୁ ମୁଁ ତମର କାହାକୁ ଭଲ ନପାଏ କହିଲ ? ତମକୁ ମୁଁ ତ ଖାଇ ପରି ଭଲ ପାଏ । ଗୋପାଳଟାକୁ ଅବଶ୍ୟ ହାସ୍ୟକର ଘଟଣା ଯୋଗାଏ ବୋଲି, ତା' ସମ୍ବନ୍ଧରେ ଧାରଣାଟା ମଧ୍ୟ ସେହିପରି ଲଘୁ । ଟେପିକି ତ ଭଲ ପାଏ । ଭଲ ନ ପାଏ କା'କୁ ? ମୋ ପରି ଦରିଦ୍ରର ଭଲ ପାଇବାରେ ବା କି ଦରକାର ?

ଏ ଚିଠି ପାଇଲାବେଳକୁ ଛୁଟୀ ଆଉ ପ୍ରାୟ ଦେଢ଼ ମାସ ଥିବ । ତାପରେ ଏ ଦୀର୍ଘ ସମସ୍ତ କଟିବ ଓ ମୁଁ ମୋର ପ୍ରାଣର ସର୍ବସ୍ୱଟିକୁ ବକ୍ଷରେ ଯାକି ଧରି ପ୍ରାଣର ଦାଉଦାହ ଶୀତଳ କରିବି କେବେ ? ପ୍ରାଣ ଅତ୍ୟନ୍ତ ଉଚ୍ଛୁଳା ହେଉଛି ଧନ । କିନ୍ତୁ ଉପାୟ ତ ନାହିଁ । ଦୀର୍ଘ ବିରହ କଷ୍ଟରେ ତୋର ଅଭିମାନ ବିଲୀନ ହେଇଯାଉ । ନଚେତ୍ ତୁ କ'ଣ ପ୍ରାଣର ଆବେଗରେ ମତେ ଆଲିଙ୍ଗନ ଦେବୁ, ଯେତେବେଳେ ମୁଁ ଏହି ଦୀର୍ଘ ପଥ ଦୌଡ଼ି ତତେ ଧରିବାକୁ ବାହୁ ପ୍ରସାର କରିବି ? ଭଲ ହେଲା, ତୁ ଭଲ କରି କଷ୍ଟ ପା । ଧୈର୍ଯ୍ୟ ଧର ବାସ୍ମାଣୀ ଦେଢ଼ ମାସ କୁଆଡ଼େ କଟିଯିବ । ଜୁଲାଇ, ଅଗଷ୍ଟ ଦୁଇମାସ କୁଆଡ଼େ କଟିଗଲାଣି ତାପରି ! କିନ୍ତୁ ପ୍ରକୃତରେ ଏହି ଦୁଇ ମାସ ଦୁଇ ବରଷ ପରି ଲାଗୁଛି । ବିରହରେ ଦିନ ମୁହୂର୍ତ୍ତ କି ଦୀର୍ଘ— କାଳର ଗତି କି ମନ୍ଥର, ମନ ତାପରି ସ୍ଥବିର ।

ମୁଁ କୁ' ବାଟେ ଯିବି ଲେଖିଲନି ? ବାଙ୍ଗିର ପୋଷିକୁ କେଉଁ କେଉଁ ଦିନ ମଟର ଆସେ ଲେଖ ମ । ମୁଁ ଏଠାରୁ ଆଉ ମାସ ୧୪ରେ ବାହାରିବି—ବୋଧହୁଏ ୧୬ ତାରିଖ ସନ୍ଧ୍ୟାରେ ଖରିଆରୋଡ଼ପୁର ପହଞ୍ଚିବି । ଟିଟାନଗର ବାଟେ ଗଲେ ମେଲ୍‌ରେ ଯିବାକୁ ପଡ଼ିବ—ଖର୍ଚ୍ଚ ଟିକିଏ ବେଶି ପଡ଼ିବ । କୁ' ବାଟେ ଯିବି ଲେଖ । ରାମ ଆସିବା ନ ଆସିବା ଲେଖିଲନି ଯେ ! ସେ ଆସିବ ଯଦି 1stକୁ ଆସିବା ଉଚିତ ମନେ କରେ । ମୋର ଅନ୍ୟ ଚିଠି ସବୁ ପାଇଥିବ, କେତେ ତ ଚିଠି ଦେଉଛି ଦୀର୍ଘ ଚିଠି ନ ଦେଉଛି ବୋଲି ଦୁଃଖ କରିବୁନି ।

ତୋର ପାଗଲ୍ ପ୍ରିୟ ।



## ବିକଳ କ୍ରନ୍ଦନ

ଭବାନୀ ପାଟଣା
୭ । ୧୦ । ୩୭ ବୁଧବାର

ପରମ ଅବୁଝ ପାଗ୍‌ଲୀଟି ମୋର,

ଧନ, ଆଜ ବୁଧବାର, ଆର ବୁଧବାରେ ଛୁଟି ହେବ । ମୁଁ ଦିନ ଗଣୁଛି ବସି ।

କାଲି ରାତରେ ଖାଇ ସାରି ପଢୁଛି—ହଠାତ୍ ମତେ କାନ୍ଦ ଲାଗିଲା । ସମ୍ଭାଳି ନପାରି ବାହାରକୁ ଗଲି । ମୁକ୍ତ ଗଗନ ତଳେ ଏକାକୀ ଠିଆ ହୋଇ ତତେ ସ୍ମରଣ କରି କରି ବିକଳ ଭାବରେ ଅନେକ ବେଳ ଯାଏଁ କାନ୍ଦିଲି । ଫେରି ଶୋଇଲି—ଶୋଇଲା ବେଳେ ମଧ୍ୟ ହୃଦୟର ଆବେଗ ଧରି ହେଉ ନଥାଏ । କାହିଁକି ହଠାତ୍ ଏପରି ହେଲା ଭାବି ପାରୁନି । ତୁଇ କି ସେଇ ସମୟରେ ମୋ କଥା ଗଭୀର ଭାବରେ ଭାବୁଥିଲୁ ପାଗ୍‌ଲୀ ? ଆଜ ସକାଳେ ଖବର କାଗଜରେ କଟକ ଝଡ଼-ତୋଫାନରେ ଘର ଖାର ହେବା କଥା ପଢ଼ି ମନ ଆଶଙ୍କାରେ ପୂରି ଉଠୁଛି । ଘର ଆଡ଼େ କ'ଣ ହୋଇଥିବ, କେଜାଣି ।

ଏ ଚିଠି ପାଇଲା ବେଳକୁ ୧୦ ତାରିଖ ହୋଇଥିବ । ତା'ର ୬ ଦିନ ପରେ ମୁଁ ଯିବି ବୋଧ ହୁଏ ।

ମୋ ଉପରେ ଆଦୌ ବିରକ୍ତ ହେବୁନି ପାଗ୍‌ଲୀ, ବୁଝିଲୁ ? ତୁ ମନେ କରିବୁ କି ଯେ ମୁଁ ତତେ ଛାଡ଼ି କେବେହେଲେ ସୁଖରେ ରହି ପାରେ । ତୋର ଅଶ୍ରୁ ମୋ ଅଶ୍ରୁଠୁ ବେଶୀ ନୁହେଁ—ଏଇ କଥାଟା ମନେ କରିବୁ ଅବୁଝ ଟା ମୋର । ଆ......

ତୋର
ସନ୍ତପ୍ତ ପ୍ରିୟ ।



# ମୋର ପ୍ରାଣର ପ୍ରାଣ

ନ୍ୟୁକାସଲ୍
୫ । ୧୨ । ୬୩
ସୋମବାର

ପ୍ରାଣର ଲକ୍ଷ୍ମୀ,

ଗତ ଚିଠିଟି ବଡ଼ ଶ୍ରେଷ୍ଠ ହୋଇଥିବ ତମ ଆଖିରେ—ମୁଁ କାଲୁ ଗାଁର ଅବସ୍ଥାରେ ବଡ଼ ବିଚଳିତ ହୋଇ ପଡ଼ିଥିଲି, ତେଣୁ ବେଶୀ ଲେଖି ପାରିଲିନି । କାଲି ରାତିରେ ତମକୁ ସ୍ୱପ୍ନରେ ଦେଖିଛି—ତମର ସ୍ମିତ-ସୁନ୍ଦର ଛବିର ସ୍ମୃତି ଏଯାଏଁ ମୋ ମନରେ ଲାଗି ରହିଛି । ଅନ୍ତତଃ ସ୍ୱପ୍ନରେ ତମକୁ ଦେଖିଛି ଏଥିଲାଗି ମୁଁ ଖୁସି ଅଛି । ଆଜି ଭାଇ ପାଖରୁ ଏକ ଚିଠି ପାଇଲି । ତା' ସାଥିରେ ତମେ ଭାଇକୁ ଲେଖିଥିବା ଏକ ଇଂରେଜୀ ଚିଠି ସେ ମୋ ପାଖକୁ ପଠେଇ ଦେଇଛି । ମୁଁ ତମର ଇଂରେଜୀ ଲେଖା ଦେଖି ଆଶ୍ଚର୍ଯ୍ୟ ହେଲି । ଚିଠିଟି ବଡ଼ ଚମତ୍କାର ହୋଇଛି । ତମେ ଏତେ ଦୂର କିପରି ଉନ୍ନତି କରିଛ ମୁଁ ଆଶ୍ଚର୍ଯ୍ୟ ହେଲି ଏବଂ ତାହା ସଙ୍ଗେ ସଙ୍ଗେ ମୁଁ ଅତ୍ୟନ୍ତ ଲଜ୍ଜିତ ଅନୁଭବ କରୁଛି ଯେ, ତମର ପଠନ ଲିପ୍ସାକୁ ମୁଁ ସର୍ବତୋଭାବେ ଜାଗରିତ ଓ ଉତ୍ସାହିତ କରିବା ଦୂରେ ଥାଉ, ତମକୁ ମାରି ବୁଝି, ତାକୁ ଛିଣ୍ଡେଇବାକୁ ଚେଷ୍ଟା କରିଛି । ପ୍ରାଣର ଲକ୍ଷ୍ମୀ ମତେ କ୍ଷମା ଦେବ । ମୁଁ ଗଲି ପରେ ମତେ ଆଉ ସେପରି ଦେଖିବ ନି । ଅତୀତରେ ସେ ସବୁ ପ୍ରକାର ଦୁର୍ବଳତା ଉପରେ ପରଦା ପକେଇ ଦେଇ ଆମେ ବର୍ତ୍ତମାନ ନୂତନ ଜୀବନ ଆରମ୍ଭ କରିବା । ତମେ ତମ ଚିଠି ସାଥିରେ ଏଥର ବରାବର ଖଣ୍ଡିଏ ଶ୍ରେଷ୍ଠ ଇଂରେଜୀ ଚିଠି ମତେ ଦେବ । ମୁଁ ତାକୁ ପଢ଼ିବି ଓ ସଂଶୋଧନ କରି ଦେବି । ଲାଜ କରିବନି—ଧନଟି ପରା—ମୋ କଥା ମାନିବ ।

୭ । ୯ । ୬୮
ମଙ୍ଗଳବାର

ପ୍ରାଣର ସଖା ମୋର,

ଧନ, ତୋର ଚିଠି ଆଜ ପାଇଲି । ସ୍ନେହ ଚିଠି ଲାଗି ତୁ ବିରକ୍ତ । ମୁଁ ନିଜେ ବି ଅନ୍ୟାୟ କରୁଛି ବୋଲି ଭାବୁଥିଲି । କିନ୍ତୁ ବର୍ତ୍ତମାନ ଏତେ ବ୍ୟସ୍ତ ଯେ ତୁ ବୁଝି ପାରିବୁ ନି । ମନ ବର୍ତ୍ତମାନ ଘରମୁହାଁ । କମିତ କାମ ସାରି ଶୀଘ୍ର ଘରକୁ ଫେରିବି, ମୁଁ ଦିନରାତି ସେଇକଥା ଭାବୁଛି । ଗତ ରାତିରେ ନିଦ ଭାଙ୍ଗିଲା ମୋର—ମୁଁ କେବଳ ତତେଇ ଭାବି ଭାବି ପୁଣି ଶୋଇଲି—ଭାବୁଥାଏ କେବେ ପୁଣି ତତେ ଆଲିଙ୍ଗନରେ ଧରି ମୋର ପୂର୍ବ ସ୍ନେହ ଜଣେଇବି । ଧନ, ତୁ ମତେ ଅବିଶ୍ୱାସ କରୁଛୁ ଜାଣି ମୁଁ ଅତ୍ୟନ୍ତ ଦୁଃଖିତ । ମୁଁ କିପରି ଭାବପ୍ରବଣ ତମେ କ'ଣ ଜାଣନା ? ମୋର ମନକୁ ମନେଇ ପାରିଲେ, ମୁଁ ଚିରଦିନ ବଶ ହୋଇ ରହିବ । କିନ୍ତୁ ତା'ର ଅବହେଳା ହେଲେ, ମନ ଭାଙ୍ଗିବ ଯେ ତାକୁ ସଜାଡ଼ିବା ବଡ଼ କଠିନ । କେଉଁ କେଉଁ କାରଣରୁ ମୁଁ ବିରକ୍ତ ହୋଇ ଉଠିଲି, ତା'ତ ମୁଁ ତମକୁ ପରିଷ୍କାର କହି ଦେଇଛି । ତମ ସଙ୍ଗେ ଏକାଠି ରହିବାର ମୋର ଯଦି ଇଚ୍ଛା ନ ଥାନ୍ତା ତେବେ ମୁଁ ନିଜକୁ ତମ ନିକଟରେ ଲୁଚେଇବାକୁ ଯାନ୍ତି କାହିଁକି ? ମୋର ପ୍ରାଣର ପ୍ରାଣ ତମକୁ ହିଁ ସ୍ନେହେ । ତମେଇ ମତେ ବୁଝିଛ ଭଲ କରି । ତମେଇ ମୋର ସହଧର୍ମିଣୀ ହେବାର ଯୋଗ୍ୟ । କିନ୍ତୁ କେତେଟା ବାଧା ଦେଖିଲି ତା' ପରିଷ୍କାର କହୁଛି—ଉଭୟଙ୍କର ମଙ୍ଗଳ ପାଇଁ । ଧନ, ସେ ସବୁକୁ ଭଲ ଦୃଷ୍ଟିରେ ନିଏ ରେ—ସବୁ ଭୁଲି ଯା, ନୂତନ ଜୀବନ ଆରମ୍ଭ କରିବା । ପ୍ରତିବର୍ଷ ବୀଜ ବୁଣା ହେଉଛି, ଶସ୍ୟ କଟା ହେଉଛି—ପୁଣି ବୀଜ ବୁଣା, ପୁଣି ଶସ୍ୟର ବିଳାସ ହସି ଉଠୁଛି ସେଇ ଜମିରେ । ପ୍ରେମ ତ ଚିରନ୍ତନ—କଳି, କଳହ ଜମିରେ ଦେଉଥିବା ସାର—ତାହା ପ୍ରେମ-ଶସ୍ୟର ଅଭିବୃଦ୍ଧି ପାଇଁ । ଧାନଗଛକୁ ଉପାଡ଼ି ରୋଇଲେ ତାହା ବେଶି ଫଳ ଦିଏ । ଆମର ପ୍ରେମର ପ୍ରଥମ ସ୍ତରକୁ ଉପାଡ଼ି ପୁଣି ଆମେ ଆମର ହୃଦୟ କ୍ଷେତ୍ରରେ ରୋଇବାକୁ ଚେଷ୍ଟା କରିବା—ମୋର ଦୃଢ଼ ଆଶା ତାହା ଆଶାନୁରୂପ ଫଳ ଦେବ । ଧନରେ ମୋର ବିରକ୍ତି ସମ୍ପୂର୍ଣ୍ଣ ଚାଲିଗଲାଣି । ବର୍ତ୍ତମାନ ମୁଁ ଦିନ ରାତି ଖାଲି ତତେ ଭାବୁଛି । କାଲି ରାତିରେ ଶୋଇଲାବେଳେ ତତେ ଭାବିଲି—ଭାବିଲି ତୋ ପ୍ରତି ଯେତେ ସବୁ ଅନ୍ୟାୟ କରିଛି—ଭାବିଲି ଫେରିଲେ ପରିପୂର୍ଣ୍ଣ ସ୍ନେହ ଦେଇ ସେ ସବୁର ପ୍ରାୟଶ୍ଚିତ କରିବି—ଭାବିଲି ତା'ପରେ ମୋର ଜୀବନ ଏକ ସାର୍ଥ ସଙ୍ଗୀତ ପରି ହେବ...କିନ୍ତୁ ହାୟ ଯଦି ସେ ଚାଲିଯାଏ...ଓଃ ମୁଁ ଭାବି ପାରୁନି ଆଉ...ଆଖି କୋଣରେ ଲୋତକ ବିନ୍ଦୁ ଦେଖାଦେଲା...ମୁଁ ମୁହଁ ମାଡ଼ି ସେ ସବୁ ନ ଭାବି ଶୋଇବାକୁ ଚେଷ୍ଟା କଲି । ସ୍ନେହ ଶିଶୁ ଆସି, ଆମର ଜୀବନକୁ ପୂର୍ଣ୍ଣତର ଓ ଜଟିଳତର କରିଛି । ଧନରେ, ମୋର

ଜୀବନରେ ଭାଗ୍ୟର ପ୍ରତିଦ୍ୱନ୍ଦ୍ୱିତା କେ। ଅପେକ୍ଷା ବେଶୀ କିଏ ଜାଣେ ? ଯଦି ଭାଗ୍ୟ ଏତେ ଦୁଃଖ ପରେ ମଧ୍ୟ—ପ୍ରତିକୂଳ ହୁଏ ମୁଁ ମରିବି—ସ୍ୱଚ୍ଛନ୍ଦ ଜାଲି ଭିତରେ—ହଁ ମରିବି, କିନ୍ତୁ ହେମର ଆଲିଙ୍ଗନରେ ମରିବି—ମୁଁ ମୋ ଦେଶକୁ ଫେରିବି, ପାଗଳ କ ସାଥିରେ ନେଇ ମରିବି—କିନ୍ତୁ ଶିଶୁଟିକୁ କାହାକୁ ଦେଇଯିବି ?...ଓଃ କି ଭୟଙ୍କର ଚିନ୍ତା ! କିନ୍ତୁ ଦୁଃଖ, ଦାରିଦ୍ର୍ୟ, ଦୁର୍ଦ୍ଦିନରେ ପଡ଼ିଲେ ମନୁଷ୍ୟ ଏହିପରି ଭାବିବାକୁ ବାଧ୍ୟ ହୁଏ । ମୁଁ ଭାଗ୍ୟବାନ, ମୋ ଦୁଃଖରେ ସାଥୀ ହେବାକୁ ଅନ୍ତତଃ ଆଉ ଜଣେ ଅଛି । ଜଗତରେ ଅନେକ ଆମ ଅପେକ୍ଷା ଆହୁରି ହତଭାଗ୍ୟ—ଯାହାଙ୍କର କେହି ନାହିଁ ।

ସ୍ୱଭି ପାଖକୁ ଖଣ୍ଡେ ଚିଠି ଦେଇଛି । ମୁଁ ଜାଣେନା ସେ କିଶ୍‌ମାସ୍‌ରେ ଏଠିକି ଆସିବ କି ନାହିଁ । ହୁଏତ ଆସିପାରେ । ମୋର ଅନ୍ୟ ସବୁ ଭଲ । ସୂର୍ଯ୍ୟଙ୍କୁ ନମସ୍କାର ବରାବର କରୁଛି । ସ୍ୱାସ୍ଥ୍ୟ ଭଲ ଅଛି । ଏବେ ଶନିବାର-ରବିବାର ଆଉ ଏକୁଟିଆ ବୋଧ୍ କରୁନି । ଯେଉଁ ଇଂରେଜ ଲେଖିକା ( ଅପ୍ରସିଦ୍ଧା ତରୁଣୀ ) କଥା ଲେଖିଥିଲି ସେ ଏବେ ଶନିବାର-ରବିବାର ମୋ ଘରକୁ ଆସୁଛି । ଭାତ, ତରକାରି, ମୋହନଭୋଗ ଖାଇବାକୁ ଓ ଜନଗଣମନ-ଅଧିନାୟକ ଗ୍ରାମ୍‌ଫୋନ୍‌ରେ ଶୁଣିବାକୁ ବାଇ ହେଉଛି । ତା' ସମ୍ବନ୍ଧରେ ମଜା କଥା ପରେ ଲେଖିବି । ଇତି ।

ତୋର
ନିତ୍ୟକାଳର
ପ୍ରିୟ ।



# ଦରିଦ୍ର ଜନସାଧାରଣଙ୍କ ସେବା

ନିଉକାସଲ୍
୧୪ । ୩ । ୩୯

ସ୍ନେହର ଲକ୍ଷ୍ମୀ,

ମୋର ଫେବ୍ରୁଆରୀ ମାସେ ବିଳମ୍ବ ହେବ—ଏକଥା ବୋଧହୁଏ ପୂର୍ବ ଚିଠିରେ ଲେଖିଥିଲି । ଖୁବ୍ ସମ୍ଭବତଃ ଜୁନ୍-ଜୁଲାଇରେ ପହଞ୍ଚିବି । ମେ-ଜୁନ୍ ପରୀକ୍ଷାରେ । ରମାକୁ ପଚାର ବୃତ୍ତିକ କଲେଜ୍ କେବେ ବନ୍ଦ ଓ କେବେ ଖୋଲୁଛି ସମର୍‌ଭେକେଶନ୍ ପାଇଁ । ମୁଁ ତାକୁ ଇତିମଧ୍ୟରେ ଖଣ୍ଡେ ଚିଠି ଦେଇଛି ।

ରାଜ ପାଖକୁ ଚିଠି ଦେଇଛି—ତାକୁ ନିମନ୍ତ୍ରଣ କରି ଇଷ୍ଟର ଛୁଟିରେ ଏଠାକୁ ଆସିବାକୁ । ଇଷ୍ଟର ଏଠି ମାର୍ଚ୍ଚ ଶେଷ ସପ୍ତାହରୁ ଏପ୍ରିଲ୍ ଶେଷ ସପ୍ତାହ ପର୍ଯ୍ୟନ୍ତ ପ୍ରାୟ ମାସେ ଛୁଟି । ସେ ଆସିଲେ ଛୁଟିଟା ବେଶ୍ ମଉଜରେ କଟିବ ।

ବର୍ତ୍ତମାନ ଭାରତବର୍ଷରେ ପ୍ରଥମ-ଗ୍ରୀଷ୍ମ ସମୟ । ଆମ୍ରକୁଞ୍ଜମାନଙ୍କରେ ବଉଳ ଫୁଟି କଷା ଆମ୍ବର ପେନ୍ଥି ଝୁଲୁଥିବଣି, କୋକିଳର ନିରନ୍ତର ଗାନରେ ପଲ୍ଲୀ ପ୍ରାନ୍ତ ମୁଖରିତ ହେଉଥିବ, ରାତିରେ ମଧୁର ଜ୍ୟୋତ୍ସ୍ନାରେ ସମଗ୍ର ଭୂମି ତରଳ ପୁଷ୍ପହାସରେ ପ୍ଲାବିତ ହୋଇ ମନର ଉଷ୍ଣତା ଲାଗି ଛାତି ପୂରଣ କରୁଥିବ—ଏ କଥା ସବୁ ମୋର ଇଂରେଜ ବନ୍ଧୁ ବାନ୍ଧବୀଙ୍କ କହି, ପ୍ରିୟ ଭାରତ ଭୂମିକୁ ମୁଁ ଫେରିବା ପାଇଁ କାହିଁକି ଏତେ ବ୍ୟଗ୍ର ତାହା ବୁଝାଏ । ଏଠାରେ ଏ ଯାଏଁ ଶୀତ ପ୍ରଚଣ୍ଡ । ଗତ ଅକ୍ଟୋବର ମାସରୁ ଗଛରୁ ପତ୍ର ଝଡ଼ି ଖାଲି ଡାଳ ସବୁ ନିଖୁଣ ହୋଇ ଠିଆ ହୋଇଛନ୍ତି ସେଇପରି । କେବଳ ଡାଫୋଡିଲ୍ ଫୁଲ ଭୂଇଁତଳୁ ତା'ର ଛୋଟ ସବୁଜ ମୁଖଟି ଟେକି ବସନ୍ତ ଆଗମନର ପୂର୍ବାଭାସ ପ୍ରଚାର କରୁଛି ।

ମୁଁ ତମକୁ ପୂର୍ବ ପତ୍ରରେ ଆମର ଭବିଷ୍ୟତ ଜୀବନ ସମ୍ବନ୍ଧରେ କିଛି କହିଥିଲି । ତମର ଫଟୋ ଦେଖିଲି—ହାତରେ ତମର ସୁନା କାଚ ନାହିଁ—ଅନେକ ବେଳଯାଏଁ ଅନେଇଲି । ସେଦିନ ବହୁତ କାନ୍ଦିଲି, ଗତ ଜୀବନର ବହୁତ

ଦ୍ୱିଧା, ସନ୍ଦେହ ଆପେ ଆପେ ତୁଟି ମନ-ମୁକୁରରେ ତମର ପବିତ୍ର ସଖି-ପ୍ରେମର ନିର୍ମଳ ପ୍ରତିବିମ୍ବ ପ୍ରତିଫଳିତ ହେଲା । ତମେ ମୋ ଲାଗି କ'ଣ କରିଛ, କ'ଣ ସହିଛ ସବୁ ଗୋଟି ଗୋଟି ହୋଇ ମନକୁ ଆସିଲା । କିନ୍ତୁ ମନସ୍ଥ କଲି, ଯା'ରୁ ପ୍ରତିବିମ୍ବା ହେମକୁ କାଞ୍ଚନ—କାଞ୍ଚନ ଦେବାରେ ନୁହେଁ; ସେ ସେପରି ନୁହେଁ—ତାହା ସମ୍ପୂର୍ଣ୍ଣ ଭିନ୍ନ ଧରଣର ହେବ । ସେ ଭବିଷ୍ୟତ ଜୀବନ ପାଇଁ ମୋର ତ ମରବଣ୍ଡିନ ବେଣୀ, ତାଙ୍କ ଅପେକ୍ଷା—ଯେଉଁ ଜୀବନରେ ଆମ ଦୁହିଙ୍କର ସମ୍ମିଳିତ ପ୍ରେମ, ବ୍ୟକ୍ତିଗତ ପାର୍ଥିବ ଜୀବନର ଦାବୀକୁ ଡେଇଁ, ଦରିଦ୍ର ଜନସାଧାରଣ ସେବାରେ ଲାଗିବ ।

ମୁଁ ଫେରିଲେ ମୋ ଜୀବନର ବଡ଼ କାମ ହେବ ପଲ୍ଲୀ ସେବା । ଯେହେତୁ ଆମ ଗାଁରେ ମୋ ପକ୍ଷରେ କାମ କରିବା ସୁବିଧା ତେଣୁ ଆମ ଗାଁରେ ହିଁ ପ୍ରଥମେ ଆରମ୍ଭ କରିବାକୁ ହେବ । ଆମ ଗାଁରେ ଆମେ ଯଦି କୃତକାର୍ଯ୍ୟ ହେବା, ତେବେ ତମେ ସେହି ପନ୍ଥାନୁସାରେ ତମ ଗାଁରେ କାମ ଆରମ୍ଭ କରିବ । କିପରି ଭାବରେ ସେ କାର୍ଯ୍ୟ କରିବାକୁ ହେବ, ସେ ସବୁ ମୋ ମୁଣ୍ଡରେ । ଏଇକ୍ଷଣି ତାକୁ କାଗଜରେ ଲିପିବଦ୍ଧ କରିବାର କୌଣସି ଦରକାର ନାହିଁ ।

ଓଡ଼ିଶାର ଶିଳ୍ପ ସମ୍ବନ୍ଧରେ ଆଗାମୀ ୧୭ ତାରିଖ ଏକ ବକ୍ତୃତା ଦେଉଛୁ—ଏପ୍ରିଲ୍‌ରେ ଆଉ ଏକ ଜାଗାରେ ଆଉ ଏକ ବକ୍ତୃତା ।

ମୁଁ ଫେରିଲାବେଳେ ଲଣ୍ଡନରେ ଏକ ବକ୍ତୃତା ଦେବାର ଠିକ୍ କରିଛୁ ।

ଗତ କେତେ ଦିନ ହେଲା ଭାରତବର୍ଷର ଖବର—ବିଶେଷତଃ କଂଗ୍ରେସର ଦଳାଦଳି କଥା, ମହାତ୍ମାଙ୍କ ଉପାସ କଥା ପ୍ରଭୃତି—ବିସ୍ତର ଏ ଦେଶର ଖବର କାଗଜମାନଙ୍କରେ ବାହାରୁଛି ।

ଲଳିଟେନ୍ଦୁଙ୍କ ଦେଖିବାକୁ କମମାଯୁ ହେଉଛ ? ଆଶା କରେ ଭଲ ଥିବ ।

ମୋର ପରୀକ୍ଷା ଯିମିତି ସୁରୁଖୁରୁରେ ସରେ ସେଥିପାଇଁ ପ୍ରାର୍ଥନା କରିବ ।

ଇତି ।

ତମର ପ୍ରିୟ ।



# ପ୍ରବାସୀର ପତ୍ର

ପ୍ରିୟତମାସୁ,

ପଦତଳେ ତବ ଶତ ମୋ ନମସ୍କାର
କରି ଜଣାଉଛି ଦୁଃଖୀର ସମାଚାର ।
ବହୁଦିନ ହେଲା ପତ୍ର ଯେ ପାଇନାହିଁ
ପତ୍ରରେ ଧ୍ୟାନରେ ଏତେ ହେଲା କାହିଁ ପାଇଁ ?
ଦୁଇ ତିନ ଚିଠି ଦେଲିଣି ମୁଁ ପାଇଥିବ
ଉତ୍ତର କାହିଁ ? ଏଥର କି ତା ମିଳିବ ?
ପ୍ରତିଦିନ ମୁହିଁ ଅପେକ୍ଷା କରେ ବୃଥା
ପ୍ରତିଦିନ ମୋର ଭଗ୍ନ ହେଉଛି ଆଶା ।
ଜାଣନା କି ପ୍ରିୟେ କଷ୍ଟ କିବା ସେ ପ୍ରାଣେ
ଭଲ ଯେ ପାଇଛି ଦିନେ ହେଲେ, ସେଇ ଜାଣେ ।
ଦୟାମୟି ଆଉ ପରୀକ୍ଷା କର ନାହିଁ
ଏଥର ନ ଦେଲେ ଭାଷା ଆଉ ଦେବି ନାହିଁ ।

କହ ଏବେ ଆଗ୍ରା, ଶରୀର କି ଅଛି ଭଲ
କଥାକେ କଥାକେ ଗଣ୍ଡେ ନୟନ ଜଳ
କହୁ ଯାଉ ନାହିଁ ? ଗଣ୍ଡ ସେ ପୁଣି ପଦ୍ମ
ପଲକେ ପଲକେ ଫୁଲ ଫୁଟେ ରଙ୍ଗ ରଙ୍ଗ,
ଦୁଃଖ ତ ତହିଁ ନାହିଁ ପକାଇଛି ଛାୟା
ଲେଖ ସଖି ତ୍ୱରା । କୋମଳ ତବ ସେ କାୟା
ଗୃହ ଜଂଜାଳେ ଆଉଜଡ ପଡୁନାହିଁ ?
ଲେଖିବ ସଜନି; ଉତ୍ତର ତବ ପାଇ
ବ୍ୟବସ୍ଥା ତାର କରିବ ତୁମର ଦାସ
ପ୍ରାଣ ଦେଇ ତାର ରଖିବ ତବ ପ୍ରାଣ ।

ଆଉ ସବୁ ଭଲ ? ଚିଠି କିଆଁ ଦେଉନାହଁ
ଏଇପରି କ'ଣ ତୁମେ ମତେ ଭଲ ପାଅ ?
ଥିଲାବେଳେ ସେଠି ନିତ୍ୟ ପତ୍ରରୁ ଆଅ
ବାର ବାର ମତେ 'ଭଲ ପାଅ' 'ଭଲ ପାଅ' ?
ଦୂରେ ଏବେ ଆସି ଭୁଲଯାଉଛ ତମ ପାଇଁ
ତମର ସଜନ ସେଦନ ସବୁଗ କାହିଁ ?
ପକାଇ କାନରେ ଗଣ୍ଠି ଆସିଲା ବେଳେ
କହୁଥିଲ ପତ୍ର 'ମନେ ଥିବ ସଦାବେଳେ'
ଦଣ୍ଡେ ତ ହେଲେ ଭୁଲି ମୁଁ ଯାଇନି ପ୍ରିୟେ
ତମ ବ୍ୟାକୁଳତା କାହିଁ ଘେନଗଲା କିଏ ?
ପ୍ରିୟତମ ମୋର ତମର ଏ ନୀରବତା
ଆଣୁଅଛୁ ପ୍ରାଣେ ନିଷ୍ଠୁର ଆକୁଳତା,
ଏମିତ କରିବ ? ଛି ଛି ମୋ ଲକ୍ଷ୍ମୀ ପତ୍ନୀ,
ପତ୍ର ପାଇଲେ ପତ୍ର ଦେବ ଗୋ ତୁମେ ।

ମଧୁ ମାସ ବଧୂ ଆସିଲା ଭୁବନେ ମାଡ଼ି
ମନ ହୁଏ କାହିଁ ଯିବାକୁ କର୍ମ ଛାଡ଼ି ।
ମଳୟ ପବନ, ଧବଳ ଜୋଛନା ରାତି
ତରୁଣ ବିରହୀ କେମନେ ଧରଇ ଛାତି ?
ଗଲା କାଲି ଥିଲା ପୂର୍ଣ୍ଣିମା ତମେ ଜାଣ
ରାତି ଗଲା ଖାଲି ଭାବି ତୁମ କଥାମାନ ।
ଏପରି ରାତିରେ ଅନ୍ତରତମ କଥା
କହୁ ହୋଇଯାଏ, ଟାଣ ତ ସରମନତା ।
ଜୋଛନାରେ ବସି ଦୂରତା କି ହୁଏ ସହ୍ୟ ?
ଦେହ ଆଉ ମନ ଦୁଇ ଏକ ହେବା ପାଇଁ
ଟାଣି ହୋଇ ପ୍ରିୟେ ଓଠେ ଓଠ ଯାଏ ମିଶି
ମଦିର ପ୍ରଣୟେ ମଧୁର ହୁଅଇ ନିଶି ।
ତମ ବିନା ସଖି ଏଇପରି ଏକ ରାତି
ନିଷ୍ଫଳ ଗଲା । କେହୁ ଆଜି କାର ଛାତି
ଶୁଣି ନ ପାରିଲେ, ବଡ଼ ଗୋ ଲାଗିଲା ବ୍ୟଥା
ନିକଟରେ ଥିଲେ କହୁଥାନ୍ତି କେତେ କଥା ।

ବସନ୍ତ କାଳେ ବିରହ ହେବାର ଶୁଣେ
ତମୁକୁ ହେବ କି, ସେଇ କଥା ମନେ ଗୁଣେ ।
କାବ୍ୟରେ ତାକୁ 'ଜ୍ୱର' ବୋଲି ଅଛି ଲେଖା,
ଚନ୍ଦ୍ରରେ ପୁଣି ନାୟିକା ହୁଅଇ ରେଖା ।
କର କଙ୍କଣ କୃଶ ହାରୁ ପଡ଼େ ଖସି
ବିରହିଣୀ ଖାଲି ଲୁହ ପୋଛେ ବସି ବସି ।
ଲକ୍ଷଣ ଯେବେ କିଛି ଦେଖ ନିଜଠାରେ
ଲେଖ, ପ୍ରାଣ ରହୁ, ଯୋଗ୍ୟ ଚିକିତ୍ସାରେ ।
ଆହୁ ଶୁଣେ ପୁଣି ବିରହିଣୀ ହେଲେ ନାରୀ
ପ୍ରିୟରେ ଆକୁଳେ ଯେହ୍ନେ ଦମୟନ୍ତୀ ଭାରି ।
ତା ହେଲେ ମୁଁ ଚାହେଁ ତମୁକୁ ଏ ରୋଗ ହେଉ
ତମ ଦୁର୍ଜନ ମତେ କିଛି ସୁଖ ଦେଉ ।
ବନଜୁଡ଼ା ଏଠି ଜଂଜାଳ ସମ ଆସେ
ପ୍ରାଣର ଜ୍ୟୋତ୍ସ୍ନା, ତମେ ନ ଥିବାରୁ ପାଶେ ।
ଯହିଁ ଥାଏ ଖାଲି ମନଟା ତୁମରଠାରେ
ଦେଗ ଦର୍ଶନ କଣ୍ଟକ ପରକାରେ ।
କେବେ ଯିବି ତାର ଠିକଣା ତ ନାହିଁ ସଖି,
କି ଲଭ ଆଗରୁ ଯିବାର କଣ୍ଟ ରଖି ?
ଏକ ଦିନ ଯାଇ ସହସା ପଶିବି ଘରେ
ଶୋଇଥିଲେ କର ଢାଙ୍କିଦେବି ଆଖି ପରେ ।

ସେ କଥା ତ ଅଛି ଭବିଷ୍ୟତକୁ । ଏବେ
ଗନ୍ଧୁଣ ଫୁଲେ ଯେ ନିତ୍ୟ ଶିଖାଣ ସେବେ
ତୁମ ପ୍ରେମ ପାଇଁ, ତାଠାରେ କରୁଣା ରହୁ
ତୁରିତ ପଣ୍ଡ ପାଇଁ ବାଗ୍‌ଦେବୀ କହୁ ।



# ହେମ ମୋର ଜାଣିବ

ଅଠଗଡ଼

ଏଠାକୁ ଆସିଲା ବେଳୁ ମନେ ହେମ କଥା
ଅଛୁ ଲଖି, ଅନୁଭବେ ବିରହର ବ୍ୟଥା
ମୃଦୁ ମୃଦୁ ଅଶ୍ରୁଜଳେ; ବିଦାୟ ବେଳର
ହେମର ସେ ଅଭିମାନ, ମୋହର ଆଦର
ଅଭିମାନ ଭାଙ୍ଗିବାକୁ; ପୂର୍ବ ରଜନୀରେ
ଆଦର ସହିବା ଶେଷେ ତପ୍ତ ଆଖି ନୀରେ—
ସବୁ ମୋର ମନେ ପଡ଼େ, ଭାବେ ବସି ବସି
ଇଚ୍ଛା ହୁଏ ପୁଣି ଯାଏଁ ରେଲରେ ମୁଁ ବସି
ଦେଖି ଆସନ୍ତି ମୋ ହେମ ଅଛଇ କିପରି ?
ମନ ମୋ ପୂରନ୍ତି ତାକୁ ଆଜ ସ୍ନେହ କରି ।
ଏ ସବୁ ଭାବନା ହେମ କଲେ ବିଶ୍ୱାସ
ପ୍ରାଣେ ମୋର ପାଆନ୍ତି ମୁଁ ପରମ ଆଶ୍ୱାସ ।
କିନ୍ତୁ ମୁଁ ଜାଣେ ସେ ଅତି ଖଗ୍ରପ ବାଳିକା
ଖାଇବାକୁ ମତେ ଜନ୍ମି ଅଛୁ ସେ କାଳିକା ।
ସବୁ ସ୍ନେହ ନେଇ ମଧ ମାଗିବସେ ଆଜ
ଦାବୀ ନ ଛାଡ଼ିବ ଥିଲା ଯାକେ ଶେଷ ବାଯୁ !

ପ୍ରାଣର ପରମ ପ୍ରିୟ କରଞ୍ଜିଆ ମୋର *
ଭାବି ଭାବି ଏହା ମୁହିଁ କରିଅଛୁ ସ୍ଥିର,
ଆଗାମୀ ଏକୋଇଶ ରବିବାର, ଜୁଲାଇରେ
ଏଠାକୁ ଆସିବ ତୁମେ ବିନା ଆପତ୍ତିରେ ।
ତୁମ୍ଭେ ଥିଲାଯାକେ ସେଠି ମ୍ୟାଲା ଲାଗିଥିବ
ତୁଣିଆ ଆସିବେ ସଦା, ବସା ନ ଭାଙ୍ଗିବ ।
ଖରଚର ଭୟେ ପେଟ ଶୁଖାଇ ଶୁଖାଇ
ବୁଢ଼ା ଖଡ଼ା କୁଜ ଆଳୁ ଘାଣ୍ଡ ଖାଇ ଖାଇ,

---

* ମୟୂରଭଞ୍ଜ ଜିଲ୍ଲା 'ପାଞ୍ଚପୀଢ଼' ସବଡିଭିଜନର ହେଡକ୍ୱାଟର, 'କରଞ୍ଜିଆ' । ସେହିଠାରେ କବି ପତ୍ନୀ ହେମଲତା କୈଶୋର କଟାଇଥିଲେ ।

ଜୀବନ୍ତ ଚଳେଇ ମଡ଼ା ସବୁ ହୋଇଲଣି,
ହାଡେ ଶିରା, ପିଞ୍ଜରରେ ହାଡ଼ ହେବ ଟଣି ।
ଶୀଘ୍ର ତେଣୁ ବସା ଭାଙ୍ଗ, ଲଳିତକୁ ଧରି
ଏଠାକୁ ପଳାଇ ଆସ ତୁମ୍ଭେ ତ୍ୱରା କରି ।

ରାମ ଆଉ ଗାଣ୍ଡୁ ମେସ୍ କରିବେ ମିଶିଣ,
ଆଣିବେ ନୂତନ ଏକ ଭୃତ୍ୟ ସୁନିପୁଣ,
ପ୍ରତିମାସେ କୋଡ଼ିଏଟି ମୁଦ୍ରା ପାଇ ଭତ୍ତା
ଆମ୍ଭଠାରୁ, ଦୁହେଁ ସବୁ କରିବେ ବ୍ୟବସ୍ଥା,
ଚେତାଇବ ତାଙ୍କୁ ଚଳିବେ ସେ ଅଳ୍ପ ବ୍ୟୟେ
ପଢ଼ନ୍ତି ସକଳେ ଯେଣୁ ବଡ଼ ଅସମୟେ ।
ତୁମ୍ଭେ ଚାଲିଆସ, ଘର ହୋଇଗଲେ ଖାଲି
ନିଜର ବ୍ୟବସ୍ଥା ନିଜେ କରିବେ ସେ ଭାଳି ।
ତମେ ଆସିବାର ପରେ ସାତ ଦିନ କାଳ
ମିଳିବ ତାହାଙ୍କୁ କରିବାକୁ ଯା' ଦର୍କାର ।
ତେଣୁ ତୁମ୍ଭ ଆସିବାଟା ବଡ଼ ପ୍ରୟୋଜନ
ବୋଲି ଭାବେ ଏହି ମୂର୍ଖ ବୋକା ଓଲୁ ଜନ ।
ତୁମ୍ଭର ଉର୍ବର ବୁଦ୍ଧିମନ୍ତ ମସ୍ତିଷ୍କରେ
କି ଅଛି ଜଣାଇବ କି ପଦେ ଏ ମୂର୍ଖରେ ?

ଏ ତ ଗଲା ବସା ପାଇଁ ଆସିବାର କଥା,
ତମ ନିଜ ପାଇଁ ମଧ କରେ ଏ ବ୍ୟବସ୍ଥା ।
ପୁରୁଷ ଆଦେଶ ଗୃହସ୍ୱାମୀ ଭାବେ ଜାଣ
ଏ ଆଦେଶ ପ୍ରିୟ-ସ୍ୱାମୀଙ୍କର ବୋଲି ଗଣ ।
ସ୍ୱାସ୍ଥ୍ୟ ଯାହା ଅସିଅଛି ଦେଖି ମୁଁ ତମର
ଜାତ କରିଅଛି ଚିନ୍ତା ଉଦବେଗ କର ।
ଆସିଲେ ଏଠାକୁ ତମେ, ହେବ ଚିକିତ୍ସକ
ତୁମ୍ଭର ମୁଁ, ଘୁଞ୍ଚାଇବ ଅସ୍ୱାସ୍ଥ୍ୟ-କଳଙ୍କ
ତୁମ୍ଭର ଚନ୍ଦ୍ରମା-ଦେହ; ନିଦୁଁ ଖାଦ୍ୟ ଯାଏଁ
ତମର ହୋଇବ, ମୋର କଥା ଅନୁଯାଏ ।
ଜାଣି ରଖ ଡାକ୍ତର ମୁଁ ଭୁଲାଇ ତମରେ
ହେରିବ ତୁମର ଦେହ, ଛଳ ପ୍ରଣୟରେ ।
ଭୋଜନ ଶୟନେ ନିଷ୍ଟେ ହେବ ରେଗୁଲାର,
ଶିଖିବ ସଙ୍ଗୀତ କିଛି; ଖାଇବ ପ୍ରହାର,

ମଧ୍ୟେ ମଧ୍ୟେ, ନ ମାନିଲେ ସ୍ୱାମୀଙ୍କ ଆଦେଶ
ଅଥବା ବିରକ୍ତ କଲେ ପ୍ରିୟଙ୍କୁ ବିଶେଷ ।
ଇଚ୍ଛ ମଧ୍ୟେ 'ମୃତ ସଞ୍ଜିବନୀ' ଖାଉଥିବ
ବିଧିମତେ, ବିଧା ନଚେତ୍ ପିଠିରେ ବସିବ ।

ମଙ୍ଗଳବାରେ ଦେଖା ହେଲେ କଟକ ଷ୍ଟେସନେ
ଆସିବାର ଦିନ; ବିରକ୍ତ ସେ ଅତି ମନେ
ବାପାଙ୍କ ଉପରେ; ରାଇରଙ୍ଗପୁର ଠାରେ
ବିଭାଘର କରିବାକୁ ଜିଦ୍ ଧରିବାରେ ।
ପଚ୍ଛିଷ ବୁଝିଲି, ପଣାମୃତ ଇଚ୍ଛା ବଡ଼
'ପାଇବେ ଶାଳୀଙ୍କୁ ମାୟାଧର ବାବୁଙ୍କର'
କିନ୍ତୁ ବାପା ଶୁଭ ଛାଡ଼ି ଜାଣିବା ବନ୍ଧନ
ଭାଙ୍ଗିବାକୁ ଚାହିଁ ତାଙ୍କ ନୂଦ୍ଧେଁ ବଳୀଯ୍ୱାନ ।
କମ୍ୟୁନିଷ୍ଟ ଥିବା ଯୋଗୁଁ ଶୀଘ୍ର ସେ ଆରେଷ୍ଟ
ହେବେ ବୋଲି ଶୁଣିଲି ମୁଁ—ବିଶ୍ୱାସ ଯଥେଷ୍ଟ ।

ଏହିକ୍ଷଣି ରାଜା ମତେ ମଟରେ ଡକାଇ
ଶୁଣାଇଲେ, ତାଙ୍କ ଷ୍ଟେଟ୍ ଦରଶନ ପାଇଁ
ରେସିଡେଣ୍ଟ ଆସୁଅଛି । ଡିନ୍ ଅଗଷ୍ଟରେ,
ବଡ଼ ବ୍ୟସ୍ତ ହେବୁଁ ଏବେ ଯେତେ ଅଫିସରେ ।

ଆସିଲେ ଆଣିବ ସାଥେ 'ହରମୋହିନୀ'କୁ ( Harmonium )
ବଜାଇବା କେବେ କେବେ ଅଣି ବାପ୍ୱଙ୍କୁ ।
ଆଣିଥିବ ପଦ୍ୟାବଳୀ ଗୋପାଳ କୃଷ୍ଣଙ୍କ
ଗୋଟିଏ କନାର ଚୌକି, ଆଉ ତବ ଟ୍ରଙ୍କ ।
ମୋଟ୍‌ରେ ଅଳପ ଦ୍ରବ୍ୟ ଅଣିଥିବ ସାଥେ ।
ମୋଟରେ ପଡ଼ିବ ଭଡ଼ା, ଟ୍ରେନ୍ ଭଡ଼ା ସାଥେ ।
ଆଖିରେ କଜଳ, ଓଠେ, ପାଦରେ ଅଳତା
ମୁଣ୍ଡରେ ସିନ୍ଦୂର, ପଛେ ବେଣୀଟି ହଲନ୍ତା
ଏହିପରି ଆସିବଟି ବେଶ ବାସ ହୋଇ
ବାଟରେ ଦେଖିବା ଜନେ ଯେସନେ ଲୋଭାଇ ।



# ଲଳିତ ବେଶ୍ ମନଷ୍ଟିଏ ହେବ

ଆଠଗଡ଼
୧୩ । ୧୧ । ୪୦

ସ୍ନେହର ହେମ,

ଆଶାକରେ ତମେ ଭଲରେ ପହଁଚି ଥିବ । ଏଠାରୁ ପ୍ରଭାକର, ତମେ ଯିବାର ଦୁଇଦିନ ପରେ ଗଲା । ତାର ଖର୍ଚ୍ଚ ପାଇଁ ମୁଁ ତାକୁ ୭ ଟଙ୍କା ଦେଲି ଓ ଘର ବାବଦରେ ଦଇତାରିକୁ ଦେବା ପାଇଁ ୨୫ ଟଙ୍କା ଦେଲି । ସୁମନ୍ତୁ ୫୦ ଟଙ୍କା ପଠାଇଲି । ପ୍ରଭାକର ଅନେକ କିଛି ଧନ ଘେନି ଯାଇଛି—ତମେ ଓ ମୁଁ ବନ୍ଦ କରି ପାରିବାର କୌଣସି ଶକ୍ତି ନ ଥିଲା । ସେ ଗଲାଦିନ ମୁଁ ସ୍କୁଲରୁ ଡେରିକରି ଫେରିଲି—ସେଣୁ ଫେରିଲା ବେଳକୁ ସେ ତାର ଲୁଗାପଟା ବାନ୍ଧି ସାରିଛି । ମୁଁ ଆସିବାରୁ ନିଧିଆ କହିଲା, 'ବାବୁ ଆପଣଙ୍କ ସୁଟ୍‌କେଶ୍ ନେବାକୁ ବସିଛନ୍ତି ।' ମୁଁ ପ୍ରଭାକରକୁ ମୁହେଁ ମୁହେଁ କହିଲି ଯେ 'ମୁଁ ସେ ସୁଟ୍‌କେଶ୍ କାହାକୁ ଦେବିନି—ସେଥିରେ ତାଙ୍କ ନାଁ ଲେଖା ହୋଇଛି ।' ସେ କହିଲା ଯେ 'ସେ କେବଳ କିଛିଦିନ ପାଇଁ ନେବ ଓ ଆଉଥରେ ଆସିଲାବେଳକୁ ନେଇ ଆସିବ ।' ତାର ସ୍ୱତନ୍ତ୍ର ସୁଟ୍‌କେଶ୍ ସେ ଧରି ଆସିବ । ତଥାପି ମୁଁ ଗ୍ରାହ୍ୟ ନ ଥାନ୍ତି; କିନ୍ତୁ ଦେଖିଲି ବେଳକୁ ସେ, ମୁଁ ଆସିବା ପୂର୍ବରୁ ମୋ ସୁଟ୍‌କେଶ୍‌ରୁ କାଗଜପତ୍ର କାଢ଼ି ତାର ଲୁଗାପଟା ପୂରେଇ ସାରିଛି । ଲୁଗାପଟା କଢ଼େଇ ନେବାକୁ ମୋର ସାହସ ହେଲାନି ।······ସେ ଯିବାର ପୂର୍ବ ରାତିରେ, ଶୋଇଲା ବେଳକୁ ମୁଁ ତାକୁ ରେଜେଇଟା ଘୋଡ଼େଇ ହେବାକୁ ଦେଲି—(ମୁଁ ତମର ଖଦଡ଼ ଶାଢ଼ୀଟିକୁ ବରାବର ଘୋଡ଼ି ହେଉଛି )—ତାକୁ ବେଶ୍ ଆରାମ ଲାଗିଲା ବୋଧହୁଏ । ସେ ଗଲାବେଳକୁ ନିଧିଆ କହିଲା, 'ବାବୁ ଏ ରେଜେଇଟା ମାଗୁଛନ୍ତି ନେବାକୁ' । ମୁଁ ଚିଡି ଗଲି, କିନ୍ତୁ ନିଜକୁ ସଞ୍ଜତ କରି କହିଲି, "ମୁଁ ଏସବୁ କଥା କିଛି ଜାଣିନି—ନୂଆବୋଉ ନ ଥାଇ ମୁଁ କିଛି କରି ପାରିବି ନାହିଁ ।" ସେ ତ ମଶାରିଟା ନେଇଥିଲା ତମ ଅନୁମତିରେ । କିନ୍ତୁ ସେ ଗଲା ପରେ ବୁଝିବୁଝି, ମୋର ଖଦଡ଼ ଲୁଗା ଦୁଇଟିଯାକ ଓ ତଉଲିଆଗୁଡ଼ିକ—ସବୁ ସେ ନେଇ ଯାଇଛି । ଏ ସବୁ ମୁଁ ଆଦୌ ଜାଣିନି—କାରଣ ମୁଁ ଆସିଲା ବେଳକୁ ସେ ଲୁଗାପଟା ବାନ୍ଧି ସାରିଥିଲା । ରେଜେଇ ନ ଦେବାରୁ ସେ ଏକପ୍ରକାର ବାଧ୍ୟ କରି ବମ୍ବେରୁ ଆଣିଥିବା ସ୍ଲେଟ ବିଛଣା ଗୁଡ଼ିକଟି ବି ନେଲା । ଏବେ ମୁଁ ଲୁଗା ଶୂନ୍ୟ ଓ ଟାମ୍ବୁଲ ଶୂନ୍ୟ ହୋଇ ରହିଛି । ତମ ଶାଢ଼ୀଟି ଲୁଙ୍ଗି କରିଛି । ସେଥିରେ ମର୍ଯ୍ୟାଦା ରହିଛି । ସବୁଆଡ଼କୁ ଟଙ୍କା ପଠେଇ ସାରିଲା ପରେ ହାତରେ ୨୫ଟି ପର୍ଯ୍ୟନ୍ତ ଟଙ୍କା ରହିଲା

୪ ଟଙ୍କା ଦେଇ ଖଣ୍ଡେ କାଣ୍ଢିଆ ଏବେ କଣିଲି । କିଧିଆକୁ ତା ଦରମା ବାବଦ ୫ ଟଙ୍କା ଦେଇଛୁ—ସେଇଥିରୁ ସେ ବ୍ଲାଉଜ କଣିବ ଓ କିଛି ଅଧିକା ପଡ଼ିଲେ ମୁଁ ଦେବି ବୋଲି କହିଛୁ । ଖଣ୍ଡେ ଗାମୁଛା ପାଇଁ ବରାଦ ଦେଇଛୁ । ଲୁଗାପଟା ଏ ମାସରେ କଣିବ କି ନାହିଁ ଠିକ୍ କରି ପାରୁନି । ତମେ ଯିବା ପରେ ପରେ ବ୍ଲାଉଜ ସରିଯାଇଥିବାର ଦେଖିଲି । ଏବେ ବଜାରରେ ସୁରୁଣା ବ୍ଲାଉଜ ମିଳୁନି । ତାଲ ପ୍ରସ୍ତୁତ ଅଛି । ଦୁଧ ପାଏ ମାତ୍ର ରଖୁଛୁ ।

ବର୍ତ୍ତମାନ ଆମେ ଦୁଇଜଣ—କାଠିମା'କୁ ଛୁଟି ଦେଇଛୁ । ପ୍ରଥମେ ପ୍ରଥମେ ସେ ଆସି ଆପତ୍ତି କଲା—ମୁଁ ମା'ଙ୍କ ଦାଁ ଧରି କୌଣସିମତେ ତା ଖାପଟରୁ ଉଦ୍ଧାର ପାଇଛୁ । ପ୍ରଥମେ ପ୍ରଥମେ ଘରଟା ଖାଁ ଖାଁ ଶୋଉଥିଲା । ଏବେ ଟିକିଏ ଦେହସୁହା ହୋଇ ଗଲାଣି । କିନ୍ତୁ କେଜାଣି କାହିଁକି ଆଠଗଡ଼ରୁ ପଳାଇବାକୁ ମନ ଦଉଡ଼ିଲାଣି । ଏବେ କିନ୍ତୁ ତମର 'ସ୍ନେହର ଦୌରାତ୍ମ୍ୟ' ନ ଥିବାରୁ ନିଶ୍ଚିନ୍ତରେ ପଢ଼ାପଢ଼ି କରୁଛି ଓ ଗଭୀର ନିଦ୍ରା ଯାଉଛି । ଠିକ୍ ସାଢ଼େ ଆଠଟା ବେଳେ ଖାଇ, ଠିକ୍ ୯ଟା ବେଳକୁ ଶୋଉଛି ଯେ ଉଠୁଛି ୫ଟା ୬ଟା ବେଳକୁ । ଏଥିରେ ଆଉ ତିଳେ ବ୍ୟତିକ୍ରମ ନାହିଁ । ମୋର ସ୍ୱାସ୍ଥ୍ୟ ବେଶ୍ ଭଲ ଅଛି । କୁଆଡ଼େ ଯାଏନା ଏଇଠି ବସି ପଢ଼ାପଢ଼ି ବା ଲେଖାଲେଖି କରେ । ଦେବାନଙ୍କ ସଙ୍ଗେ ବେଳେ ବେଳେ ଗପ ହୁଏ । ବୟୋବୃଦ୍ଧ ହେଲେ କ'ଣ ହେବ ରସିକ—ତମେ ଗଲା ପରେ ମତେ ଦିନେ ପଚାରିଲେ "ଶୀତ ଋତୁରେ ସ୍ତ୍ରୀଙ୍କି ପଠେଇ ଦେଲ କାହିଁକି ?"

'ଜନ୍ମାନ୍ତର ରହସ୍ୟ' ବହି ଖଣ୍ଡି କାଲି ସାଢ଼େ ଆଉ ଦିନ ୧୧।୦ଟା ପର୍ଯ୍ୟନ୍ତ ଏପଟୁ ସେପଟ ଯାଏଁ ପଢ଼ି ଦେଖିଲି ଏଇଟା ଗୋଟାଏ ବାଜେ ବହି । ତାର କାରଣ ଦେଖାହେଲେ କହିବି । ତମର ଏସବୁ 'ରହସ୍ୟ'ରେ ମୁଣ୍ଡ ଖେଳେଇବା କିଛି ଦରକାର ନାହିଁ । ତମର ଜୀବନର ଏକମାତ୍ର ରହସ୍ୟ ହେବା ଉଚିତ—ଏକ ଅପରାଧୀ ଓ ଅପଦାର୍ଥ ପ୍ରିୟକୁ ସ୍ନେହରେ ପ୍ଲାବନ କରିବା ।

ଆମ ଲଳିତଟି କିପରି ଅଛି ? ସେ ଏଠି ଥିଲାବେଳେ ସେ କାନ୍ଦିଲେ ମୁଁ ବିରକ୍ତ ହେଉଥିଲି—ଏବେ ବେଳେ ବେଳେ ତା କାନ୍ଦ ଶୁଣିବାକୁ ମୋର ପ୍ରାଣ ବ୍ୟଗ୍ର ହୁଏ । ସେଇଟି ଆମର ବେଶ୍ ପିଲା ଓ ବେଶ୍ ମନଖଟିଏ ହେବ । ଇଂଜେକ୍ସନ୍ ନ ନେଇ ପାରିଲେ ଶୀଘ୍ର ହୋମିଓ ଚିକିତ୍ସା ଆରମ୍ଭ କରିଦିଅ । ଇତି ।

ତମର

ଅପ୍ରିୟ ମାନସିଂ ।

# ମୋ ଶକୁନ୍ତଳା

ସ୍କୁଲ
୨୧ । ୧୧ । ୪୦

ଦେବୀ,

ହେମ, ତମୁକୁ ଜୀବନରେ ପ୍ରଥମ ଥର ପାଇଁ ଦେବୀ ବୋଲି ସମ୍ବୋଧନ କଲି । ଏ ସମ୍ବୋଧନ କାଲି ଦିନଯାକ ମୋ ମନରେ ଧ୍ୱନିତ ହେଉଛି । ଏହା ମୋର ଅନ୍ତରତମ ପ୍ରଦେଶରୁ ସ୍ୱତଃ ଉଚ୍ଛ୍ୱସିତ ହୋଇ ଉଠୁଛି ।

× × × ×

ଆଜି ଖଡ଼ଗପୁରରୁ ଗୋଟିଏ ମଜା ଚିଠି ପାଇଛି । ବାଣପୁର ସ୍କୁଲରେ ପଢ଼ିଲାବେଳେ ଗୋଟିଏ ସର୍କସ ଆସିଥିଲା । ସେ ସର୍କସର ନାମ ଭଗବାନ ସିଂ ସର୍କସ । ସେଥିରେ ଗୋଟିଏ ମାଙ୍କଡ଼ ସାଇକଲ ଚଲାଇଥିଲା । ସର୍କସ ଦେଖି ଆସି ଦିନେ ପଢ଼ା ସମୟରେ ମୁଁ ଆଉ ଗୋଟିଏ ପିଲାକୁ ମାଙ୍କଡ଼ କରି ତାକୁ ଗୋଟିଏ ଗଦା ଉପରେ ବସାଇ ସେଥିରେ ଦଉଡ଼ି ଲଗାଇ ଭିଡ଼ିଲି ଓ ପିଲାଙ୍କ ଆଗରେ 'ଭଗବାନ ସିଂର ଗ୍ରାଣ୍ଡ ସର୍କସ' ଦେଖେଇଲି । ଏହି ସମୟରେ ମାଷ୍ଟ୍ରେ ଆସିଲେ । ଗଦାଟାକୁ ଘର ମଝିରେ ପକେଇ ଦେଇ ଯେଝା ଜାଗାରେ ପଢ଼ି ବସିଲୁ । ମାଷ୍ଟ୍ରେ ପଚାରିଲେ ଗଦାଟା ଘର ମଝିରେ ଗଡ଼ୁଛି କାହିଁକି ? କିଏ ପକାଇଲା ? ପିଲେ ସମସ୍ତ କଥା କହିଦେଲେ । ହେଲା ଆମ ଦିହିଁଙ୍କ ଉପରେ ବେତ ମାଡ଼ । ମୋର ସେହି ସଙ୍ଗୀଟିର ନାମ ବଟକୃଷ୍ଣ । ସେ ଏବେ ଖଡ଼ଗପୁରରେ କାମ କରୁଛି । ଆଜି ସେ ଚିଠି ଲେଖିଛି —ମତେ ଆପଣ ବୋଧହୁଏ ମନେ ରଖି ନ ଥିବେ । ମୋ ନାଁ ବଟ—ଆମେ ବାଣପୁରରେ ଘ୍ୟା ଘ୍ୟା କରିଥିଲେ । ମୁଁ ନବଭାରତ ଓ ସହକାରରେ ଆପଣଙ୍କ କଳିତ କଥା ସବୁ ପଢ଼େ, ମୋର ବନ୍ଧୁମାନେ କୌଣସି କାର୍ଯ୍ୟ ଲାଗି, ଆପଣଙ୍କ ପାଖକୁ ଚିଠି ଲେଖିବାକୁ କହୁଛନ୍ତି । ଚିଠିର ଉତ୍ତର ପାଇଲେ ସେ କାର୍ଯ୍ୟଟି କଥା ଲେଖିବି ।

× × × × ×

ଡିସେମ୍ବର ୨୨ରେ ବୋଧହୁଏ ଯାଉଥିବେ । ରାଇରଙ୍ଗପୁରର ଭରତାଶ୍ରମରେ ( ବାପା ତମର ଭରତ ଋଷି, ତେବେ ତମେ ପାଳିତ କନ୍ୟା ନୁହେଁ ) ମୋର ଉପେକ୍ଷିତା ନିର୍ଯାତିତା ଶକୁନ୍ତଳା ମୋର ଯୁଗଳ 'ଭରତ'କୁ ଘେନି ବିରହ ବଧୂରୀ ହୋଇ ରହିଛି, ତାକୁ ରଥରେ ବସାଇ ନେଇ ଆସିବି । ତେବେ ଆଣିବି ତାକୁ କୁଟୀରକୁ—ହସ୍ତିନାପୁରର ପ୍ରାସାଦ ମୋର ନାହିଁ । ତେବେ ମୋର ଶକୁନ୍ତଳା ଯେଉଁଠି ରହିବ ସେହି ମୋର ପ୍ରାସାଦ; ମୁଁ ଯେଉଁଠି ରହିବି ମୋ ଶକୁନ୍ତଳାର ସେହି ଶ୍ରେଷ୍ଠ ପ୍ରାସାଦ ।

× × × ଇତି ।

ପ୍ରିୟ

# ଅହରହ ତୋ' ଚିନ୍ତାରେ

ଆଠଗଡ଼
୨୧ । ୯ । ୧୯୭୧

ପ୍ରାଣର ପାଗଲି ରେ,
ନିଷ୍ଠୁର ଲକ୍ଷ୍ମୀ ମୋର,

ମୋର ଚିଠି ପାଇଥିବୁ । କିନ୍ତୁ ଆଉର ଚିଠି ଅପେକ୍ଷା କରିଥିବୁ—ପ୍ରତିବାଦ । ମୋର ପ୍ରତିବାଦ ଦେବାର ଇଚ୍ଛା । କିନ୍ତୁ ତୁ ତ ପ୍ରତିବାଦ ଚିଠି ଲେଖିଲେ ମତେ ଓଲଟି ମାନ କରୁ । ହଁ ଚିଠି ଲେଖି ଖାଲି ଜାଣ !'—ମୁଁ ଉତ୍ତର ଦେଉନି । କିନ୍ତୁ ଅହରହ ତୋ ଚିନ୍ତାରେ ସମୟ କଟୁଛି ରେ ହେମ । କି ମାୟା ଲଗେଇଲୁ—ପାଖରେ ଡାକେ ପଡୁନି ବୋଲି ତୁ ବିରକ୍ତ ହେଉ, କିନ୍ତୁ ପାଖଛଡ଼ା ହେଲେ ମୁଁ ହେଲି ତୋ ପାଇଁ ପାଗଲ । ତୁ ଯିବା କଥା ପଡ଼ିବାରୁ ତୁ କହିଥିଲୁ ମତେ "ମାୟା, ତୁ କୁଟିରେ କ'ଣ ଏକୁଟିଆ ରହିପାରିବୁ ?" ମୁଁ ହଁ କଲି—କିନ୍ତୁ ବର୍ତ୍ତମାନ ମୋର ମୋ ନିଜ ସମ୍ବନ୍ଧରେ ଅଜ୍ଞତା ମୁଁ ବୁଝୁଛି । ତୁ ମତେ ମୋଠୁ ବେଶୀ ଜାଣୁ, ନାହିଁ ?

ଶୀଘ୍ର ଆ । ଆଉ ୨୪ ଦିନ ଭିତରେ—ଅର୍ଥାତ୍ ଏ ଚିଠି ପାଇବା ପରେ ପରେ ଚାଲିଆ, ମୋ ଧନଟି ପରି । ମତେ ଭାରି ଏକୁଟିଆ ଲାଗୁଛି । ସମୟ କଟେଇବା ପାଇଁ ଏବେ ଗୋଟିଏ ଗୋଟିଏ ଗୀତ ଲେଖି ପର୍ଣ୍ଣଚନ୍ଦ୍ରକୁ ଡାକି ସେଥିରେ ସୁର ଦିଆଇ ବୋଲାଉଛି । ଯୋଡ଼ିଏ ଭଲ ଗୀତ ହଉଛି—ତୁ ରେକର୍ଡ଼ରେ ଦେଖିବୁ ସେ ଯୋଡ଼ିକ ।

ତତେ ତ ଅହରହ ଭାବୁଛି । ବାପାଙ୍କ ସାଥିରେ ଶୀଘ୍ର ଆ ମୋ ଧନ—ମତେ ଏକୁଟିଆ ପ୍ରବାସରେ ରଖି ବାପଘରେ କେତେ ଦିନ ରହିବୁ ? ଦୁଷ୍ଟ ଲାଲକୁ ନିଶ୍ଚେ ଆଣିବୁ—ଲାଲୁକୁ ଯିମିତି ବାଘକୁ ଅଣା ହେଇଛି, ତାକୁ ସେମିତି ଶୀଘ୍ର ଆଣିବାକୁ ହେବ ।

ମହାଳୟାରେ ଏଥର ବିଧିମତେ ମହାଳୟା ଶ୍ରାଦ୍ଧ ଏଠାରେ ଦେଲି । ବ୍ରାହ୍ମଣକୁ ଆଠଣା ପଇସା ଦକ୍ଷିଣା ଦେଲି । ତମେ ନ ଥିବାରୁ ମତେ ବଡ଼ ଅସମ୍ପୂର୍ଣ୍ଣ ଲାଗୁଥାଏ, କିନ୍ତୁ ବାଧ୍ୟ ହେଇ କଲି । ବିଧାନରେ ମଧ୍ୟ ଦେଖିଲି ଗୋଟିଏ ପିଣ୍ଡ ପତ୍ନୀ ହାତରେ ଦେବାର କଥା । ଶ୍ରାଦ୍ଧଟି କଲାବେଳେ ଓ ପରେ ମତେ ବଡ଼ ଭଲ ଲାଗିଲା—ତମେ ଥିଲେ ମୋ ଆନନ୍ଦ ପରିପୂର୍ଣ୍ଣ ହୋଇଥାନ୍ତା । ମୁଁ ନିଜେ କୂଅରୁ ପାଣି ଆଣିଲି ଓ ପିଣ୍ଡକୁ ନିଜ ହାତରେ ନେଇ ଚମ୍ପକପୁର ପାଖେ ପାଣିରେ ପକାଇ ଆସିଲି ।

ଓଠରେ ଦୀର୍ଘ ଚୁମ୍ବନ ଦିଏ । ନିଶ୍ୱାସ ଆଘ୍ରାଣ କରେ·········

ଇତି,
ପ୍ରିୟ ମାଇକା ।

## ସତ୍ୟର ସେ ପୁଣ୍ୟଶିଖା

ଆଠଗଡ଼
୨୭ । ୯ । ୪୧
ରାତ୍ରି ସାଢ଼େ ୩

ପରମ ସ୍ନେହର ଲକ୍ଷ୍ମୀ
ହେମ ରେ,

କାଲି ପତ୍ର ପଢ଼ି ତୋର ଚିତ୍ତ ବିଚଳିତ
ହୋଇଥିବ ପତ୍ର ଲାଗି, 'ମାୟା' ଅଧୀରିତ
ହୋଇ, ଏ ଚିଠାଉ ଲେଖୁଅଛୁ ତରତରେ
'ପତ୍ର ନ ଦେବାର'—ପଣ ଭାଙ୍ଗି ବ୍ୟଥିତରେ ।
ପଣ ମୋର କଡ଼ ନାଁ। ତା' ପ୍ରାଣର ବ୍ୟଥିତ,
ମୋ ଲାଗି ଯେ ଦେଇଅଛୁ ତା ପ୍ରାଣ-ଫଟିକ !
ତା-ବିଚ୍ଛିନ୍ନ ଏ ଜୀବନେ କଷଣ ଅଶେଷ
ପାଉଛୁ ମୁଁ, ନାହିଁ ତାର ଅନୁକମ୍ପା ଲେଶ
ମୋ ପ୍ରତି—ଏପରି ଭାବ ଅମ୍ଳାନ ପାଇଁ
ଭ୍ରକୁଟିରେ ଚିତ୍ତ ମୋର ହେଉଅଛୁ ବାଇ ।
ଜାଲେ ଏହା ଶୁଣି ଚିତ୍ତେ ହୋଇବ ସୁଦୟା
ଏଥିପାଇଁ ପତ୍ରେ ତାହା ଲେଖିଥିଲି ମାୟା ।
ପରେ କିନ୍ତୁ ପଶ୍ଚା-ତାପ ଆସିଲା ତା ମନେ—
ବାଧ କରିବାର ତାକୁ, ଏହି ଅଭାଜନେ
କିଏ ଦେଲା ଅଧିକାର ? ଅଯୋଗ୍ୟ ମୁଁ ତାର
ପଦ ଧୋଇ ଲଭିବାକୁ ଅଳତାର ଗାର ।
ସତ୍ୟର ସେ ପୁଣ୍ୟଶିଖା, ମୁଁ ମହାପାତକୀ
ଦେହ ମନ ମୋର ଅପକର୍ମ ଛିନ୍ନ ଢାଙ୍କି,
ନୀଚ ସ୍ୱାର୍ଥପର କ୍ଷୁଦ୍ର ଆପଣା ସର୍ବସ୍ୱ
ନିଜ ଅହଂକାରେ ଗଢ଼ା ମୋର କ୍ଷୁଦ୍ର ବିଶ୍ୱ;
ଅମୃତ ଛାଡ଼ି ମୁଁ ଶୋଷ ଘୁଞ୍ଚାଇବା ପାଇଁ
ବାର ବାର ଶୁଣ୍ଡିଶାଳେ ଯାଇଅଛୁ ଧାଇଁ ।

ଘୃଣ୍ୟ ମାଦକତା ନାହିଁ ବୋଲି ଅମୃତରେ
ଘୃଣା ମୁଁ କରେଛି ପୁଣି ଘୋର ଅଜ୍ଞତାରେ
ସହି ସହି କରୁ ସବୁ ମୋର ଅତ୍ୟାଚାର
ହାତ ପଛେ ପୋଛୁ ନିତ ତପ୍ତ ଅଶ୍ରୁ ଧାର,
କେବଳ ମୋହର ପାଇଁ—ଏ ପାଷଣ୍ଡ ପାଇଁ
ସାଇତି ରଖିଛୁ ସେହ୍ନ, ସୁଧା ତା' ଘୋଡ଼ାଇ,
ଲୋକ ନେତ୍ର ଅନ୍ତରାଳେ, ବନ୍ଧୁ ଜନଙ୍କର
ଅନୁନୟ ଉଦ୍‌ଯୋଗ କରଣ ବିଫଳ ।
ସେ ପୁଣ୍ୟବତୀରେ ମୁହିଁ ଅଧମ ସ୍ୱାମୀପ
ଧମକାଇବାକୁ ପୁଣି ହୁଏ ମୋ ସାହସ ।
ଥାଉ ଥାଉ, ଆଉ ପାପ ଅଧିକ ନ କର
ଅବଶିଷ୍ଟ ଜୀବ-କାଳ ପ୍ରାୟଶ୍ଚିତ୍ତେ ଭର
ଦେଖିବ କାଳେ ମୁଁ ଯଦି ଦିଏ କିଛି ସୁଖ
ତାକୁ, କର ଆଶେ, ହସେ ଉଜ୍ଜ୍ୱଳ ତା ମୁଖ ।
ଏଣିକି ତା ଇଚ୍ଛା ଯାହା କରୁ ସେ ମାନିନୀ
ଆଜ୍ଞା ପାଳି ସେବା କର ତଣ୍ଡ ତାର ଜାଣି—
ପାରିବି ବା;—ନ ହେଲେ ତା କେବଳ ତପସ୍ୟା,—
ସେବା ତାର ମୋର ପୁଣ୍ୟ, ସେ ମୋର ନମସ୍ୟା ।
ଆସିବ ସେ ଆସୁ ତାର ଇଚ୍ଛା ହୁଏ ଯେବେ,
ନ ଆସୁ ବା,—ବିରକତ ନ ହୋଇଣ ଯେବେ
କରଯୋଡ଼ି ତା ଆସିବା ପାଇଁ ମୁଁ ଅନାଇ
ଜନମ ଜନମ ସୁଖେ ସିବ ମୁଁ କଟାଇ ।"

ଇତି,
ତୋର
ଅଯୋଗ୍ୟ
ପ୍ରିୟ ମାଇକା ।



# ଜୀବନରେ ଦୁର୍ଦ୍ଦଶା

ଆଠଗଡ଼

୨୭ । ୬ । ୧୯୪୧

ପ୍ରାଣର ହେମ,

କାଲି ଏଠାରେ ଭୂମିକମ୍ପ ହୋଇଥିଲା । ୫ଟା ବେଳେ ମୁଁ ଘରେ ବସିଛୁ, ହଠାତ୍ କବାଟ ଧଡ଼ ଧଡ଼ ହେଲା । ପ୍ରାୟ ମିନିଟିଏ ଖଣ୍ଡେ ହେଲା ପରେ ମୁଁ ଶୂନ୍ୟ ମନ୍ଦିରରେ ଭୂତର କାଣ୍ଡ ମନେକରି ଭୟରେ ବାହାରକୁ ପଳେଇଲି । ତା ପରେ ଟିମେ ରହିବା ଘରର କବାଟର ଝିଲମିଲି ଖୋଲି ଏହା ପବନର କ୍ରିୟା କି ନୁହେଁ ଦେଖୁଛୁ, ପୁଣି ଆଉ ଥରେ ଘରର ସମସ୍ତ କବାଟ ଝଣ୍ ଝଣ୍ ହୋଇ ୧୦।୧୨ ସେକେଣ୍ଡରେ ବନ୍ଦ ହୋଇଗଲା । ମୁଁ ମନେ କଲି ନିଶ୍ଚୟ ଏ ଏକ ଦୁଷ୍ଟ Spiritର କାଣ୍ଡ । ଅନ୍ୟ ଏକ ଆଶଙ୍କାରେ ମଧ୍ୟ ଗୁଣ୍ଡ ଶୁଖି ଆସିଲା । ହେମର କ'ଣ ହେଲା କି ? ସ୍ପିରିଟ୍‌ମାନେ ସଙ୍କେତ ଦିଅନ୍ତି—ଏ କ'ଣ ସେଇଥି ? ବହୁକ୍ଷଣ ବାହାରେ ବୁଲି ଭୟରେ ଭୟରେ ଘରେ ପଶିଲି । ରାତିରେ ଖାଇଲାବେଳେ ଏ କଥା ନିଧିଆକୁ କହିବାରୁ ସେ ଜଣାଇଲା ଯେ ଭୂମିକମ୍ପ ହୋଇଛୁ, ଯା' ଫଳରେ ଗୋଟାଏ ବ୍ଲକ ଟଳିପଡ଼ିଲା ଏବଂ ରଥ ଟଳମଳ ହୋଇ ଉଠିଲା ।

ଆଜକାଲି ବିବାହ ବ୍ରତାଦି ଏଠି ବହୁତ । ଆଜି ଏକ ନିମନ୍ତ୍ରଣ । କାଲି ରାତିରେ ଏଠି ଭୀଷଣ ବର୍ଷା ହୋଇ ଯାଇଛୁ । ପାଗ ବେଶ୍ ଥଣ୍ଡା ବର୍ତ୍ତମାନ । ସମସ୍ତେ ପଚାରୁଛନ୍ତି 'ଶିଳେ ଆସିବେ କି ନାହିଁ ।' ମୁଁ ନାହିଁ କରି ଦେଉଛୁ । ଆଗ୍ରିମେଣ୍ଟରୁ ଚିଠି ଏପର୍ଯ୍ୟନ୍ତ ନ ପାଇ ବଡ଼ ଆଶଙ୍କାରେ ଦିନ କାଟୁଛୁ । ଏଠି ଆଉ ମନ ଲାଗୁନାହିଁ । ବଜେଟ୍‌ରେ ଦରମା କାଟି ଦେବାକୁ ବସିଥିଲେ; କିନ୍ତୁ ମୁଁ ଲିଖିତ ଆପତ୍ତି ଦେଇଥିବା ଫଳରେ ମୋର Contractର କାଗଜପତ୍ର ଦେଖି, ଦେବାନ୍ ୧୫୦ ରଖିଛନ୍ତି । P.A. ବଜେଟ୍ ଦେଖି ପାରିଲେ ଏଇ ରେଟ୍‌ରେ ମିଳିବ । ଜୁଲାଇରେ କିନ୍ତୁ ୧୦୦ ଟଙ୍କା ରେଟ୍‌ରେ ଦୁଇମାସର ଦରମା ମିଳିଯିବ । ସେତେବେଳେ ରାମ ପାଖକୁ ଟଙ୍କା ପଠାଇବି ଓ ଏଠାର ଧାର ଶୁଝିବି ।

ତମେ ଏକଦମ୍ ଚିଠି ନ ଦେଲେ କମିତ ଚଳିବ ? କାର୍ଡ ଖଣ୍ଡେ ହେଲେ ଫୋପାଡ଼ ଦିଅ । ମୁଁ ତମର ଦେହର ଖବର ଜାଣିବାକୁ ନିତାନ୍ତ ଉଦ୍‌ବିଗ୍ନ ପରା ! ମୋ ମା'ଟି ମୋର, ଅଭିମାନ ନ କରି ଶୀଘ୍ର ଦେହ ସମ୍ବନ୍ଧରେ ବିସ୍ତୃତ ଭାବରେ ଲେଖିବୁ । ଲଳିତ ଓ ଲଲ୍ଲୁଙ୍କ ଖବର ନିଶ୍ଚୟ ଲେଖିବୁ ।

ମୁଁ ଏଠି ଦୁଇବେଳା ସୂର୍ଯ୍ୟଙ୍କୁ ନମସ୍କାର କରୁଛି ଓ ଗାଧୋଉଛି । ସ୍କୁଲ ସମୟ ଛଡ଼ା, ଦିନରାତି ସବୁ ସମୟ ଏଇ ଘରେ କଟଉଛି, କୁଆଡ଼େ ଯାଉନି । ପ'ର ଦିନ ରାତି ମୋ ଘରର ସମ୍ମୁଖ ବାରଣ୍ଡାରେ ଅନ୍ଧାରରେ ଖାଲି ଦେହଟାରେ ଗଡ଼ୁଥାଏ ଓ ଡେଁ ଏବଂ ମୋ ଭାଗ୍ୟକୁ ସୁମରି ସୁମରି କାନ୍ଦୁଥାଏ । ହେମ, ମୁଁ ଜୀବନରେ ବହୁତ ଦୁର୍ଦ୍ଦଶା ଭୋଗ କଲି । କିନ୍ତୁ ତମପ୍ରତି ମୁଁ ଯେଉଁ ଅନ୍ୟାୟ ଅତ୍ୟାଚାର କରି ଯାଉଛି ସେ ଦୁର୍ଦ୍ଦଶାର ତୁଳନା ନାହିଁ । ଆଜି, ସେ ସବୁ କହିବା ମୋ ପରି ପାଷଣ୍ଡର ତୁଣ୍ଡରେ ଆଉ ସୁନ୍ଦର ଦିଶୁନି ।

ଚିଠି ଦେ ଧନ, ଆ ମୋ କୋଳକୁ, ତୋର ଦୁଇ ସ୍ୱର୍ଣ୍ଣ ଗଣ୍ଡରେ ଦୁଇଟି ଗଭୀର ଚୁମ୍ବନ ଦିଏ । ତୁ ମୋ ଛାତିରେ ନୀରବ ହୋଇ ଶୋଇ ରହ ।

ତୋର ଅପରାଧୀ ପ୍ରିୟ ।



# ଲିଲୁ ଲାଗି ସ୍ୱପ୍ନ

ଆଠଗଡ଼
୩୧ । ୩ । ୧୯୪୩

ଲକ୍ଷ୍ମୀ,

ସୁବିଧାରେ ସୁବିଧାରେ ଏଠି ପହଞ୍ଚିଲି । ତମେ ସପ୍ତଶଯ୍ୟା ଭ୍ରମଣ ଯାହା ଲେଖିଛ, ତା' ସେତେ ସ୍ଫୂର୍ତ୍ତିଯୁକ୍ତ ହୋଇନି । ସାଧାରଣ କଥାଟାକୁ ସାଧାରଣ ଭାବରେ ମନୋରଂଜକ ଭାବରେ ପ୍ରକାଶ କରିବା ଅଭ୍ୟାସ ଦରକାର କରେ । ଦୃଷ୍ଟାନ୍ତ ସ୍ୱରୂପ ମୋର ଏଇ ଥରକର ଆସିବା ଯାହା ବର୍ଣ୍ଣନା କରି ଗୋଟିଏ ଲେଖା ପଠେଇବି ବୋଲି ସ୍ଥିର କରିଥିଲି କଟକରୁ । ସେଇଟା ଲେଖିବି ଲେଖିବି ବୋଲି ତମକୁ ଚିଠି ଦେବାରେ ବିଳମ୍ବ ହେଲା । ମୁଁ କାଲିଆଜିକୁ ଲେଖି ପଠାଇ ଦେବି । ତମେ ମନୋଯୋଗ ଦେଇ ଦେଖିବ, ସାଧୁ ଶବ୍ଦ ଓ ଦେଶଜ କିମିତି ସେଥିରେ ବ୍ୟବହୃତ ହୋଇଛି ଓ ସାଧାରଣ ଘଟଣା, ଯା'କୁ ଆମେ ଲେଖି ରଖିବାର ଯୋଗ୍ୟ ମନେ କରୁନା, କିପରି ବର୍ଣ୍ଣନା ଦ୍ୱାରା ସୁଖପାଠ୍ୟ ହୋଇପାରେ । ଅବଶ୍ୟ ମୁଁ ଏ ସବୁ ଦେଖେଇ ପାରିବି କି ନା ତା ମୋ ଲେଖା ଉପରେ ନିର୍ଭର କରେ, ଯା'କୁ ଏପର୍ଯ୍ୟନ୍ତ ଆରମ୍ଭ ସୁଦ୍ଧା ହୋଇନି ।

ଖାଇସାରି ବାନ୍ତି କରୁଛ ବା ମଡ଼ଉଛି—ଏ କଥା ମତେ କହିବାର ବିବ୍ରତ କରୁଛି । ଗୋଟେ କଥା କରିବ ? ଧନଟି ମୋର କରିବ । ନଂ ୧୪ଟିର ୪ଟି ଲେଖେଁ ପିଲ୍ ସପ୍ତାହେ ଖଣ୍ଡେ ଖାଲି ପେଟରେ ଖାଇଦିଅ । ଭଲ ହୋଇ ଯିବ । ରୋଗଟାକୁ ଆଦୌ ଅବହେଳା କରନି । ଯାହା ବା ସ୍ୱାସ୍ଥ୍ୟ ଅଛି, ଖାଦ୍ୟ ଯଦି ପେଟକୁ ନ ଯାଏ, ତେବେ କ'ଣ ହେବ ଭାବ । ନଂ ୧୪ ବଡ଼ ଚମତ୍କାର ଔଷଧ । ତମକୁ କହୁଛି ପରା, ସେଠାର ହୋମିଓପାଥିକ୍ ଡାକ୍ତର ହୋମିଓପାଥିରେ ପରାସ୍ତ ହୋଇ ନିଜ ସ୍ତ୍ରୀଙ୍କୁ ନଂ ୧୪ ଦେଇଥିଲେ ଓ ଭଲ କରିଥିଲେ । ତମେ ଖାଅ—କିଛି ଆଶଂକାର କାରଣ ନାହିଁ । ନିଶ୍ଚେ ଭଲ ହେବ । ଆଦୌ ଅବହେଳା କରନି—ଅବହେଳାର କଥା ନୁହେଁ, ଏ'ଟା ଭଲ ଲକ୍ଷଣ ନୁହେଁ ।

ଲାଲୁ ମୁଁ ଆସିଲା ପରେ କ'ଣ କରୁଥିଲା ? ସେ ଯେତେବେଳେ ପଣିକିଆ ଘୋଷୁଥାଏ, ମୋ ଚେଷ୍ଟ ପୂର ଉଠୁଥାଏ । ସେ କମିଷ୍ଠ ଏକ ଦେଶପ୍ରସିଦ୍ଧ ଏକ ସ୍କଲାର୍ ବା ଲେଖକ ହେବ—ଏ ସ୍ୱପ୍ନ ମୋ ମନରେ ଭାସି ଉଠୁଥାଏ !

ତମ ଉଦ୍ୟାନରେ ଫୁଲ ଫୁଟିଲାଣି କି ? ଏଠାରେ ଫେର ଦେଖିଲି, ଫୁଲ ଗୁଡ଼ିକ ସବୁ ଝଡ଼ି ପଡ଼ୁଛି ।

ଡାକ୍ତର ଦେଇଥିବା ଔଷଧ କିପରି କାର୍ଯ୍ୟ କରୁଛି ? ତାଙ୍କ ନିକଟକୁ ଆଜି କୃତଜ୍ଞତା ଜ୍ଞାପନ କରି ଖଣ୍ଡେ ପତ୍ର ଦେଇଛି । ତମେ ତାଙ୍କୁ, ଅବହେଳା ନ କରି, ଡକେଇ, ସ୍ୱାସ୍ଥମତ ନିଜର ଚିକିତ୍ସା କରିନିଅ । ନିଜ କଥା ତ ନିଜେ ବୁଝିଲ ନି, କେତେ ଦିନ ଆଉ ମରିବାକୁ ରହିଲ ?

ମୋର ସ୍ନେହ ଗ୍ରହଣ କରିବ ?

ଇତି ।
(ଅ) ପ୍ରିୟ ।



## ଲଳିତ ପାଇଁ ବହୁତ ମନେ ପଡ଼େ

ଆଠଗଡ଼
୧୭ । ୪ । ୪୩

ପ୍ରାଣର ବାୟୁଣୀ,

ତତେ ଚିଠି ଲେଖିବାରେ ହେଳା କରି ଅପରାଧ କରିଛୁ, କ୍ଷମା କର। ଆରଥର ଚିଠି ପାଇ ଖୁବ୍ ଅଭିମାନ ହେଲ, ଦୁଃଖ ହେଲ । ମୁଁ ଲମ୍ବା ଲମ୍ବା ଚିଠି ଦେବ, ତୁ କାହିଁକି କାର୍ଡ଼ରେ ଚିଠି ଦେବୁ ? ଆଉ ୩ ପଇସା ଖର୍ଚ୍ଚ ହେଲେ କ'ଣ ଗଣ୍ଡି ସରି ଯାଆନ୍ତା ? ନାଁ ମତେ ତୁ ଜାଣି ଜାଣି ଅପମାନ ଦେଉଛୁ ?

ଶଶୀ ବାବୁ * ଇ ଭିତରେ ଆସିଥିଲେ। ପ୍ରାୟ ୫ ଦିନ ରହିଲେ। ତମେ ନ ଥିବାରୁ ସେ ବାରମ୍ବାର ଦୁଃଖ ପ୍ରକାଶ କଲେ । ସେ ତାଙ୍କର ବାଲ୍ୟସ୍ମୃତି ଲେଖି ସାରିଛନ୍ତି, ତମ ଅନୁରୋଧରେ। ତମକୁ ପଢ଼ିକି ଶୁଣେଇଥାନ୍ତେ । ତମେ ନ ଥିବାରୁ ବୋଧହୁଏ ସେ କଥା ଆଦୌ ଉଠିଲା ନାହିଁ । ତାଙ୍କୁ ଗ୍ରୁଡ୍ ଆସିବା ପାଇଁ, ଦେବାନ ଓ ମୁଁ ପୁଣି ଧବଳେଶ୍ୱର ଯାଇଥିଲୁ । ପୁଣି ସେଦିନ ସେଠି ରହିଲୁ—ଶଶୀ ବାବୁଙ୍କ ଅତିଥି ହେଇ । ତାଙ୍କ ଧବଳେଶ୍ୱର ବଗିଚାରେ ହେଇଥିବା ପ୍ରକାଣ୍ଡ ପ୍ରକାଣ୍ଡ ଦେଶୀ ଆଳୁରୁ ଖଣ୍ଡେ ଦେବାନଙ୍କୁ ଓ ଖଣ୍ଡେ ମତେ ଦେଲେ । ଆମ ଖଣ୍ଡକ ତମେ ଆସିବା ଅପେକ୍ଷାରେ ମୁଁ ଥୋଇ ଦେଇଛୁ।

ମୁଁ କହେ କି, ମୁଁ ୩୦ ତାରିଖ ଦିନ କଟକ ଯିବି। ଅନ୍ୟମାନେ ସିଧା ସିଧା ଉଦଳା ଯାନ୍ତୁ । ତମେ ଓ ଲଲ୍ କଟକ ପର୍ଯ୍ୟନ୍ତ ଟିକଟ କରିଥିବ, ତମକୁ ମୁଁ ନେଇ ଆସିବି । ଆମେ ଏଠି କିଛିଦିନ ରହି ଧୀରେ ସୁସ୍ଥେ ପୁଣି ଉଦଳା ଯିବା। ଏଥିରେ ତ କେତେ ଗୁଡ଼େ ପଇସା ନଷ୍ଟ ହେଇ ଯାଉନି । ଆମ ସ୍କୁଲ୍ ୮ ମେରେ ବନ୍ଦ ହେବ ଓ ଜୁନ୍ ଅଧାକୁ ଖୋଲିବ । ମୁଁ ଏତେ ଲମ୍ବା ଦିନ ଉଦଳାରେ ବସି ରହିବାକୁ ଚାହେଁନା, କି ବିନା କାମରେ ଇସ୍କୁଲ୍ ଛୁଟୀ ହେଇଗଲା ପରେ କମିତି ଏଠି ଦିନେ ଦିନ ବି ରହିବି ତା ଭାବି ପାରୁନି । ତେଣୁ କହୁଛୁ, ତମେ ଓ ଲଲ୍

ଆସ । ଆମେ ମେ ୨୦ ଆଡ଼କୁ ଯାଉ, ଉଦଳାରୁ ଜୁନ୍ ପ୍ରଥମ ସପ୍ତାହରେ ଫେରି ଆସିବା କ'ଣ ହେଉଛି ? ମନ୍ଦ ହେବ କି ?

ଏଇ ୨୧ ତାରିଖରେ ମୁଁ ଓ ଦେବାନ୍ ବୋଧହୁଏ ସମ୍ବଲପୁର ଯିବୁ, P. A. ସାଥିରେ ଦେଖା କରିବାକୁ । ସେଠୁ ବଣାଇ, ବାମରା ଦେଇ ଫେରିବୁ ୨୫ ତାରିଖକୁ । ସେ ଆସିଲା ଦିନୁ ମତେ ଲଗେଇଛନ୍ତି ସାଥିରେ ଯିବାକୁ, ମୋର ବି କାମ କିଛି ହେଇ ପାରେ, ତେଣୁ ନାହିଁ କରୁନି । କାଲି ସ୍କୁଲରେ ଖାଇଲାବେଳେ ତରକାରୀ ପଠେଇଥିଲେ । ଆଉଥରେ ଘରକୁ ବି ଖାଇବାକୁ ଡାକିଥିଲେ—ଭଲ କରିଥିଲେ । ତମେ ନ ଥିବାରୁ ମୁଁ ତାଙ୍କୁ ଡାକି ପାରୁନି । × × ×

......ବହୁସ୍ଵଣା ଆସିବା ନ ଆସିବାର ଠିକ୍ ଖବର ଏ ପର୍ଯ୍ୟନ୍ତ ଆସିନି । ତେଣୁ ମୋର କିଛିଏ ଆଶା ଏ ପର୍ଯ୍ୟନ୍ତ ବି ଅଛି । ବାପା ଆଜି ଆସି ନାହାନ୍ତି । କାଲି ଆସିଲେ ମୁଁ ଭାରି ଖୁସି ହୁଅନ୍ତି । ଲଳିତ ପାଜି ବହୁତ ମନେ ପଡ଼େ—କେଜାଣି କାହିଁକି ।

ଭଲ ଚିଠି ଦେବୁ,

ମୋର × × ×

ଶତ ଶତ ନେବୁ ।

ଇତି ।

ପ୍ରିୟୁ ।

---

✱ ପତ୍ରରେ ବର୍ଣ୍ଣିତ ଶଶୀ ବାବୁ ହେଉଛନ୍ତି କବିବର ରାଧାନାଥ ରାୟଙ୍କ ପୁତ୍ର ଶଶୀଭୂଷଣ ରାୟ ।

# ପ୍ରଣୟ ଓ ପ୍ରେମର ଇଡ଼େନ୍ ଉଦ୍ୟାନ

ଖଇରାଗଡ଼
୧୭ । ୮ । ୪୪

ପରମ ପ୍ରେୟସୀ ହେମ ମୋର,

ସୁନ୍ଦର ପ୍ରଭାତ । କାଲି ରାତରେ ଶୀତଋତୁରୁ ବିଦାୟ ନେଲା ପରି ଲାଗିଲା । କିନ୍ତୁ ଶଯ୍ୟା ତ୍ୟାଗ ବେଳେ ଦେଖିଲି ଯେ ମୁହଁ ଫେରାଇ ସେ ଟିକିଏ ଟିକିଏ ତାର ବିଷଦାନ୍ତ ଦେଖେଇବାଟା ଏକାବେଳକେ ଛାଡ଼ି ପାରିନାହିଁ । ଗରମ ପୋଷାକ ପିନ୍ଧି ମୁଁ ଏଇ ଯେ ଲେଖି ବସିଛି—ମତେ ପ୍ରାଭାତିକ ଶୀତଳବାୟୁ, ସୂର୍ଯ୍ୟର ସୁନେଲି କିରଣ, ମୁକ୍ତ ଉଦାର ବାତାୟନ ଦେଇ ଚତୁର୍ଦ୍ଦିଗର ଶାନ୍ତ ସୁଷମା ଅତି ଭଲ ଲାଗୁଛି ।

ଶଯ୍ୟା ତ୍ୟାଗ ପରଠାରୁ ହେମ ପାଖକୁ ଖଣ୍ଡେ ପତ୍ର ଲେଖିବି ବୋଲି ମନରେ ଉଠିଛି । ହଠାତ୍ ଏଇପରି ଅନେକ କଥା ମନରେ ମୋର ଉଠେ । ହଠାତ୍ ତା'ର ପରିଣତି ନ ହେଲେ, ମୋର ଶାନ୍ତି ରହେନା । ବୋଧହୁଏ ଏହା ସ୍ନାୟବିକ ଦୁର୍ବଳତାର ଏକ ପ୍ରକୃଷ୍ଟ ଚିହ୍ନ । ଏହି ଦୁର୍ବଳତା ଜନିତ ଜୀବନରେ ଅନେକ କାମ କରି ପକାଇଛି, ଯାହାର ସ୍ମୃତି ମୋର ସମସ୍ତ ଆତ୍ମାକୁ ବେଳେ ବେଳେ ଆତଙ୍କିତ କରି ପକାଏ ଏବଂ ମୁଁ କାତରସ୍ୱରରେ ଚିତ୍କାର କରେ "ହେ ଭଗବାନ, ମୋ ଦେଇ ତମେ ଏପରି ବିଭତ୍ସ କାମ କରେଇଲ ।"

ସେହି ପ୍ରକାର ସାମୟିକ ଉତ୍ତେଜନାରେ ମୁଁ ହଠାତ୍ ଆଜି ହେମ ନିକଟକୁ ଛୁଟି ଦେବାକୁ ବସିଥିଲି । କିନ୍ତୁ ପରେ ଆପଣାକୁ ସଂଯତ କରିବାକୁ ଚେଷ୍ଟାକଲି, ନାନା ପ୍ରଶ୍ନ ଓ କେତେକ ଚିନ୍ତାଦ୍ୱାରା ।

ଦିନେ ହେମକୁ ପତ୍ର ଦେବା ଓ ତାଠୁ ପତ୍ରପାଇବା ଏକ ମାନସିକ ମଧୁର ବିଳାସ ଥିଲା । ଗାଁରୁ ବିଦାୟ ନେଇ ଆସି, ମାତ୍ର ୭ ମାଇଲ ଦୂରସ୍ଥ ରେଲଷ୍ଟେସନରୁ ତାକୁ ପତ୍ରଦ୍ୱାରା ପ୍ରାଣର କଥା ନ କହିଲେ ମୁଁ ସ୍ଥିର ରହି ପାରୁ ନ ଥିଲି । ସମସ୍ତ ପଥ

କେବଳ ତା'ର ଚିନ୍ତା । କଷ୍ଟରେ ବସାରେ ପହଞ୍ଚି ପୁଣି ଚିଠି, ତା ପର ଦିନ ପୁଣି ଚିଠି । ତା'ପରେ ଚିଠିର ଉତ୍ତର ପାଇଁ ବ୍ୟାକୁଳ ପ୍ରତୀକ୍ଷା । ପୋଷ୍ଟମ୍ୟାନ୍ ଆଗମନକୁ ମୁଁ ଅନାଇ ରହୁଥାଏ । ହେମର ଚିଠି ଆସିଛି ତ, ସେଇ ଘୋର ବେକାର୍ କାଳରେ ମଧ୍ୟ ମୁଁ ଉତ୍ସାହରେ ଆକାଶରେ ଗୃହାଳି ପରି ବୋଧକରେ । ଯଦି ଚିଠି ଆସି ନ ଥାଏ ତେବେ କ୍ରୋଧ, ଅଭିମାନ, ଅଶ୍ରୁ ଓ ଆପଣାର ଜୀବନକୁ ଅଭିଶାପ ।

ଏସବୁ କାଳ୍ପନିକ ଲାଗୁଛି । ଏଇ ସେଦିନ ଏସବୁ ଘଟିଯାଇଛି । ଆଜି କି ପ୍ରଭେଦ । ଆଜି ତ ମୁଁ ପ୍ରବାସରେ ସପ୍ତାହ ସପ୍ତାହ ଧରି କଟାଉଛି, ନାହିଁ ମୁଁ ଦେଉଛି ହେମକୁ ପତ୍ର, ନା ହେମ ଲେଖୁଛି ମତେ ! ମୁଁ ଷ୍ଟେଟ୍‌ରୁ ଷ୍ଟେଟ୍‌କୁ ବୁଲୁଛି, ଚପରାସୀ—ସହାୟ ହୋଇ, ଅନେକ ସମୟରେ ହେମ ବା ମୋର ପିଲାମାନେ ମନରେ ଇ ଆସୁନ—ବରଂ ଜଗତରେ ମୁଁ ଏକ ସଙ୍ଗହୀନ ପ୍ରାଣୀ ଯେପରି । ମୁଁ କାମ କରୁଛି, ଖାଉଛି, ପିଉଛି, ରିପୋର୍ଟ ଲେଖୁଛି, ସାହେବମାନଙ୍କ ସଙ୍ଗେ ମୋ ଦେଶର ଶିକ୍ଷା ସମ୍ବନ୍ଧରେ ଯୁକ୍ତି କରୁଛି । କିନ୍ତୁ ସବୁ ଯେପରି ମନେ ହେଉଛି, ମୋ ଦ୍ୱାରା କିଏ ଏସବୁ କାମ କରେଇ ନେଉଛି ମାତ୍ର । ଏ ସବୁଥିରେ ମୋର ପୂର୍ବ ଉତ୍ସାହ ବା ପ୍ରାଣପୂର୍ଣ୍ଣତା ନାହିଁ । କାରଣ ପ୍ରଣୟ ଓ ପ୍ରେମର ଇଡେନ୍ ଉଦ୍ୟାନରୁ ଆଜି ମୁଁ ବହିଷ୍କୃତ । ମୁଁ ଜ୍ଞାନବୃକ୍ଷର ଫଳ ଖାଇ ଅନେକ କଥା ଜାଣିଲି ସତ, କିନ୍ତୁ ପ୍ରେମିକ ଜୀବନର ପ୍ରାକୃତିକ ମଧୁରତା ମୁଁ ଚିରଦିନ ପାଇଁ ହରେଇଛି । ମୋ ଜୀବନର ଧ୍ରୁବତାରା ଆଜି ମେଘାବୃତ । ମୋ ଜୀବନର ଅନ୍ଧାର ରାତି ଯେଉଁ ହେମତାରକାର ସ୍ନିଗ୍ଧ କିରଣରେ ଉଦ୍‌ଭାସିତ ହେଉଥିଲା, ସେ ଆଜି ମୋ ଆକାଶରୁ ଅସ୍ତମିତ ।

ପ୍ରେମିକ ଭବିଷ୍ୟତକୁ ଚାହେଁ । ଅପରାଧୀର ଆଖି ସବୁବେଳେ ପଛକୁ । ଦିନେ ଉତ୍କଣ୍ଠିତ ହୋଇ ଆଗାମୀ ଦିନ ବା ରାତିର ନିକଟ ମିଳନକୁ ମୁଁ ଚାହିଁ ରହୁଥିଲି—ପ୍ରହର ପ୍ରହର ଧରି ସେଇ ମିଠାମୁହୂର୍ତ୍ତି ଗୁଡ଼ିକର ସ୍ୱପ୍ନ ଦେଖୁଥିଲି । ଆଜି ସେପରି କରିବାକୁ ଗଲେ ଆପଣାକୁ ଧିକ୍‌କାର ଆସୁଛି । ହେମକୁ ଅବଲମ୍ବନ କରି ମଧୁର ମିଳନର କଳ୍ପନା କରିବାକୁ ଗଲେ, ଭୟ ଓ ସରମରେ ମନ ଆପେ ଆପେ ସଙ୍କୁଚିତ ହୋଇ ଉଠୁଛି । ଏବେ କେବଳ ଅନେକ ବେଳ ଧରି ମୁଁ ଅପରାଧୀ ପରି ଅତୀତ ଜୀବନର କଥାହିଁ ବସି ଭାବେ । ବାରମ୍ବାର ପଚ୍ଛରେ 'କି'ଣ କଲି !' 'କି ହେଲା '!

ହରେଇବା ଧନ ଫେରି ପାଇବାକୁ କିଏ ବା ନ ଚାହେଁ ? ମୁଁ ତେଣୁ ସକଳ ଅପରାଧ ଓ ଅନ୍ୟାୟ ଆଲୋଚନା କରି କରି ଅନେକ ସମୟରେ ବିଧାତାଙ୍କୁ କରଯୋଡ଼ିରେ ପ୍ରାର୍ଥନା କରେ "ହେ ଭଗବାନ୍, ହେମକୁ ଫେରାଇଦିଅ । ଜନ୍ମ-ଜନ୍ମାନ୍ତରରେ ମୁଁ ଯେପରି ତାକୁ ପାଏ । ମୋର ଦୁର୍ବଳତା ଜନିତ ଅପରାଧ ସେ ବୁଝି ନ ପାରିଲେ ମଧ୍ୟ, ତୁମେ କି ବୁଝି ପାରିନା ?"

ଏବେ ପ୍ରାୟଇ ଯେଉଁ ଭଗବାନଙ୍କର ବ୍ୟକ୍ତିତ୍ୱରେ ମୁଁ ବିଶ୍ୱାସ କରେନା ତାଙ୍କୁ ଉପାସନା କରେ କେତୋଟି ମୁହୂର୍ତ୍ତି ଲାଗି । ମୁକ୍ତି, ସିଦ୍ଧି, ମାନ, ସମ୍ମାନ ମୋର କିଛି ହିଁ ଇଚ୍ଛା ନାହିଁ । ଏ ସବୁ କୌଣସି କାଳେ ମୋର ପ୍ରାର୍ଥନାର ବସ୍ତୁ ହୋଇ ନାହାନ୍ତି । ଭଗବାନ ବି ସବୁବେଳେ ମୋର ଉପାସ୍ୟ ନୁହନ୍ତି । ମୋର ଉପାସନା ଏକପ୍ରକାର ମନନ ମାତ୍ର । ବେଳେ ବେଳେ ନିଜେ ହେମ ଏ ମନନର ଅବଲମ୍ବନ ହୋଇ ଉଠେ । ତାର ଜ୍ୟୋତିର୍ମୟ ରୂପ ମୋର ମାନସ ନେତ୍ରର ସମ୍ମୁଖରେ ଉଭା ହୁଏ । ବେଳେ ବେଳେ ମୋର ମନେ ହୁଏ ସେ ଏକ ଅଗ୍ନିଶିଖା ଭିତରେ ଦଣ୍ଡାୟମାନ । ବେଳେ ବେଳେ ପଙ୍କଯୁକ୍ତ ପଦ୍ମ—ଉଙ୍କିବା ଉପରେ, ବେଳେ ବେଳେ ଶୁଭ୍ର ବସନାବୃତା ହାସ୍ୟମୟୀ ଜ୍ୟୋତିର୍ମୟୀ କିଶୋରୀ,—ଦୁଇ ହାତ ମେଲାଇ ମତେ ପ୍ରଣୟର ଆଶ୍ୱାସ ଦେଉଛି । ମୁଁ ପ୍ରାୟଇ ତାକୁ ପ୍ରାର୍ଥନା କରେ "ହେମ, ମତେ ଗ୍ରହଣ କର । ମୋର ଅପରାଧ ମାର୍ଜନା କର । ମୁଁ ତମ ପ୍ରତି ଘୋର ଅପରାଧ କରିଛି । କିନ୍ତୁ ତା ବୋଲି ତମୁକୁ ପ୍ରତ୍ୟାଖ୍ୟାନ କରିନ । ମୋର ଶରୀରର ପଙ୍କ ପୋଛି ଦେଇ ମତେ ନିର୍ମଳ କର । ହେ ଭଗବାନ୍ ମତେ ହେମର—ଉପଯୁକ୍ତ କର ।"

ଏ ପ୍ରକାରର ମନନର ଫଳ ମୁଁ ପାଇଛି । ମୁଁ ଯଦି ଏହି ମନନର ରସଟାକୁ ଅହୋରାତ୍ର ମୋ ମନ ଭିତରେ ପ୍ରବହମାନ ରଖି ପାରୁଥାନ୍ତି, ତେବେ ମୋର ପ୍ରଣୟୀ-ଜୀବନ ମୁଁ ବିନା କ୍ଳେଶରେ ଫେରି ପାଆନ୍ତି । ମନୁଷ୍ୟର ବାହ୍ୟ ଜୀବନଟା ବାସ୍ତବିକ ଭିତର ଜୀବନର ପ୍ରତିବିମ୍ବ ମାତ୍ର । ମନୁଷ୍ୟ ମନରେଇ ବଞ୍ଚେ । କିଛି ଦିନ ତଳେ ଏକ ପ୍ରବାସ-କାଳରେ ମୁଁ ପ୍ରତ୍ୟହ ହେମକୁ ମନନ ଓ ପ୍ରାର୍ଥନା କରି ଓ ଅନବରତ କେବଳ ତାର ଚିନ୍ତାରେ ଆପଣାକୁ ନିମଜ୍ଜିତ ରଖିବାକୁ ଚେଷ୍ଟା କଲି । ଫଳରେ ଫେରିଯାଇ ଦେଖିଲି, ହେମ ମୋ ପ୍ରତି ଅତ୍ୟନ୍ତ ପ୍ରସନ୍ନ । ମୋ ସଙ୍ଗେ ନିଭୃତ ମିଳନ ଲାଗି ଆଗ୍ରହଣୀ । ଯେତେ ଦିନ ଘରେ ରହିଲି, ତାର ସ୍ନେହାଭିଷିକ୍ତ କଥା, ସେବା, ଯତ୍ନରେ ମୁଁ ସମସ୍ତ ଅତୀତକୁ ପାସୋରି ପକାଇଲି । ଭାବିଲି ନୂତନ ଅଧ୍ୟାୟ ଆରମ୍ଭ ହେଲା । କିନ୍ତୁ ହଠାତ୍ ସାମାନ୍ୟ କଥାରେ କଳି ହୋଇ ସୁନାର ସଂସାର ଟିକକେ ଚୂର୍ମାର୍ ହୋଇଗଲା ।

କିନ୍ତୁ ସେଇ କେତୋଟି ଦିନର ଅଭିଜ୍ଞତା ମତେ ଖୁବ୍ ସାହସ ଦେଇଛି । ମୁଁ ଭାବୁଛି ମାନସିକ ସାଧନା ଦ୍ୱାରା ମୁଁ ମୋର ସମସ୍ତ କଳଂକକୁ ପୋଛି ଦେଇ ଦିନେ ହେମ ଆଗରେ ତାର କିଶୋରୀ ଜୀବନର ରୂପକଥାର ରାଜପୁତ୍ର ରୂପେ ଠିଆ ହୋଇ ପାରିବି ।

ଆଜି ହେମ ନିକଟକୁ ପୂର୍ବପରି ପ୍ରେମ-ପତ୍ର ଲେଖିବାକୁ ବସିଥିଲି । କିନ୍ତୁ ହଠାତ୍ ବନ୍ଦ କଲି । ଭାବିଲି ଠିକ୍ ବେଳ ଆସିନି । ଯେତେ ଥର ଗଢ଼ିଲି,

ସେତେ ଥର ଭାଙ୍ଗିଲି । ଏଥର ଏପରି ଗଢ଼ିବି ଯେପରିକି ଚିରଦିନ ରହିବ । ଏହି ଗଢ଼ିବା ଆଉ କିଛି ନୁହେଁ । କେବଳ ମୋର ମାନସିକ ତପଃ ସାଧନା—ନୂତନ ମେଘରେ ମାନସିକ ଆକାଶକୁ ନୂତନ ଭାବରେ ସଜେଇବା, ଯେପରିକି ହେମ ପୁଣି ଥରେ ମୋ ଆଡ଼କୁ ମୁଗ୍ଧ ନେତ୍ରରେ ଚାହିଁ ରହିବ ।

ଭାବିଲି ଏଇ ଚିଠି ଲେଖାକୁ ମୋର ସାଧନାର ଅଙ୍ଗ କରିବି । ପ୍ରେମପତ୍ର ଲେଖିବି ନାହିଁ । ତାର ସମୟ ଯାଇଛି । ତାକୁ ଆତ୍ମ-ଚିତ୍ରରେ ପରିଣତ କରେଁ । ହେମକୁ ଲକ୍ଷ୍ୟକରି ମୋର ପ୍ରାଣର କଥା ପ୍ରକାଶ କରେଁ, ଦେଖେଁ ସେ ଚିତ୍ର କିପରି ଦିଶୁଛି । ହେମର ଚକ୍ଷୁ ଦୃଷ୍ଟି ନିକଟରେ ମୋର "ଗୋପନୀୟ" ବୋଲି କିଛି କଥା ରଖେଇ ଦେଇ ନାହିଁ । ଏଇ ପତ୍ର-ଚିତ୍ର କେତେ ଦିନ ଗୋପନ ରଖି ପାରିବି ଦେଖେଁ ।

ମାନସିଂ



# ଲଲିତ ରୁଷିଲାଣି

ରେଢ଼ାଖୋଲ୍
୧୧ । ୫ । ୧୯୪୪

ହେମ,

କାଲି ନବ୍ସପଦରେ ଏଠି ପହଁଚିଲୁ । ଲାଲୁ ଓ ଲଲିତଙ୍କୁ ଲେଡ଼ିଜ୍ କମ୍ପାର୍ଟ୍-ମେଣ୍ଟ୍ରେ ବସାଇ ଦେଲି । ବାଟରେ ସେମାନେ କୌଣସି ଗୋଲମାଲ କରି ନାହାନ୍ତି ।

ବସ୍‌ରୁ ଓହ୍ଲାଇ ମୁଁ ପିଲା ଦୁହିଁଙ୍କ ଧରି ଡାକବଙ୍ଗଳାକୁ ଚାଲି ଆସିଲି, ପଛେ ଗଙ୍ଗା ମାଲ୍ ଧରି ଆସିଲା । କାଲି ଦିନ ଓ ରାତି ଦେବାନଙ୍କ ଘରେ ଖାଇଲୁ । ଆଜି ଏଠାର ଫରେଷ୍ଟ ଅଫିସରଙ୍କ ଘରେ ନିମନ୍ତ୍ରଣ । ସେ ମୋର କଲେଜରେ ପଢ଼ାସାଥି ଥିଲେ ।

କାଲି ରାତିରେ ସମସ୍ତେ ବାରଣ୍ଡାରେ ଶୋଇଥିଲୁ । ଲଲିତ ଦୁଇ ଦିନ ଥର ଝାଡ଼ା ଗଲା । ଦେବାନଙ୍କ ବସାରେ ଖାଇକରି ଝାଡ଼ା ଗଲା । ଲାଲୁ କାଲି ରାତିରେ ଖାଇବା ଜାଗାରୁ ଉଠିଗଲା—କହିଲା ତା'ର ଖାଇବାର ଇଚ୍ଛା ନାହିଁ । କାଲି ରାତିରେ ଉଭୟଙ୍କୁ ନଂ ୧ ଦେଇଥିଲି ଶୋଇବା ପୂର୍ବରୁ । ଆଜି ସକାଳେ ଲାଲୁକୁ ନଂ-୧୪ ଦେଇଛି ଓ ଉଭୟଙ୍କୁ ସୋଢ଼ା + ଦହି ସର୍ବତ ଖାଇବାକୁ ଦେଇଛି । ସକାଳେ ସେମାନଙ୍କୁ ବଙ୍ଗଳା ଚାରିପଟେ ଦୌଡ଼େଇଲି । ଲଲିତ ଇ'ଭିତରେ ଦୁଇଥର ରୁଷିଲାଣି ଓ ଥରେ କାନ୍ଦିଲା—ଗଙ୍ଗା ହାତୀ ଦେଖେଇ ନେବାରେ ରାଜି ହେଲା । ବର୍ତ୍ତମାନ ଦୁହେଁଯାକ ଏଘର ସେ ଘର ହୋଇ ଖେଳୁଛନ୍ତି, କଳି କରୁଛନ୍ତି ଓ କଥା ହେଉଛନ୍ତି ।

ପିଲା ଦୁ'ଟା ଚାଲି ଆସିବାରେ ତମେ ଖୁବ ଏକାକୀ ବୋଧ କରୁଥିବ । ପାହାନ୍ତାରେ ଖୁବ ବ୍ୟସ୍ତ ଲାଗିଲା ମନ, ଏଥିପାଇଁ ।

ପିଲା ଦୁହେଁ କାଳୁ ସମ୍ବଲପୁର କଥା ଭୁଲେ ପଚାରୁ ନାହାନ୍ତି । ଖାଲି କହୁଛନ୍ତି କେତେବେଳେ ଯିବା ?

ଉଷୀରଚାକୁ ✱ ମୋର ସମସ୍ତ 'ଭଲପାଇବା' ଦେବ । ସେ ଏଡ଼େ ସୁନ୍ଦର, ଏଡ଼େ କଉତୁକିଆ ଓ ଏତେ ଭଲ ହୋଇଛି ଯେ, ସେଇ ଗୋଟିଏ ପିଲା, ଯେ କୌଣସି ଜନନୀକୁ ଅନ୍ୟ—ବିସ୍ମୃତ କରି ରଖିବ । । ଇତି ।

ମାନସିଂ

---

✱ ପରଲୋକଗତା କନ୍ୟା 'ପଦ୍ମଶ୍ରୀ' ।



# ମତେ ଆଉ ଟଙ୍କା ମାଗିବନି

ସମ୍ବଲପୁର
୨ । ୯

ପ୍ରିୟତମ ଲକ୍ଷ୍ମୀ,

ପାଞ୍ଚଶ ଟଙ୍କା ପଠାଇଲି । ଘର ପାଇଁ ମତେ ଆଉ ଟଙ୍କା ମାଗିବନି । ଏତିକରେ ଯେତିକ ହେଲା ସେତିକ କରି ଏଠାକୁ ଆସ । ପରେ ବାକି ଯାହା ଅସ୍ତେ ଆସ୍ତେ ହେବ । ବର୍ତ୍ତମାନ ଯାହା ଧାର କଲଣି ତାକୁ ଶୁଝି ଶୁଝି ବର୍ଷେ ଗୁଳିଯିବ ।

ମାନ୍ଦ୍ରାଜରେ ତ୍ରିବେଣୀ ନାମକ ପ୍ରସିଦ୍ଧ ଇଂରେଜୀ ମାଗାଜିନ୍‌ରେ 'ମୋ ଧନରେ' କବିତାଟିର ଇଂରାଜୀ ଅନୁବାଦ ବାହାରିଛି, ଏବେ ଦେଖିଲି । ପୂର୍ବରୁ ଆଉ ଦୁଇଟି କବିତା ବାହାରି ଥିଲା ଏଇ ମାଗାଜିନ୍‌ରେ । ଲକ୍ଷ୍ମୀ, ସେ କବିତା ଦେଖିବା ପରେ, ପୁଣି ଜୀବନ୍ତ ହୋଇ ଉଠିଛି ମୋ ସ୍ମୃତିରେ ।

ପିଲାମାନେ ଭଲ ଅଛନ୍ତି । ଲାଲୁର ପଅରଦିନ ରାତିରେ ପତଳା ଝାଡ଼ା ହୋଇଥିଲା । ମୋଟ ଉପରେ କାଲୁ ଭଲ ଅଛନ୍ତି । କେବଳ ସକାଳ ସନ୍ଧ୍ୟାର ଜଳଖିଆଟି ସମସ୍ୟା ହୋଇ ରହିଛି ।

ଅକ୍ଟୋବର ମାସ ପ୍ରଥମ ଅର୍ଦ୍ଧରେ ମହତାବ୍ ଏଠାକୁ ଆସିବେ, ସେ ଲେଖିଛନ୍ତି । ଆମର ସେ ସମୟକୁ ନାନାଉତ୍ସବ କରିବାର ବ୍ୟବସ୍ଥା ହେଉଛି । ତମେ ସେ ସମୟକୁ ଏଠାକୁ ଆସି ଯାଇଥିଲେ ଭଲ ହୁଅନ୍ତା । ଲାଲୁ ଲଳିତର ବାକି ପଢ଼ା ପାଇଁ ମୁଁ ଚାହେଁ ସେମାନେ ପୂଜା ଛୁଟିରେ ଏଇଠି ରହି ପଢ଼ିବେ ଯେପରି । ଇତି ।

ପ୍ରିୟ ।



# ରାୟଗଡ଼ରେ ଓଡ଼ିଆ ଚେତନା

ରାୟଗଡ଼ା
୨୪ । ୧ । ୪୫

ପ୍ରାଣର ହେମ,

ସେଦିନ ରାତି ଆମକୁ ପ୍ରାୟ ଘଣ୍ଟାଏ ଖଣ୍ଡେ ଷ୍ଟେସନରେ ଅପେକ୍ଷା କରିବାକୁ ପଡ଼ିଲା । ଶ୍ରୀମୁଖ ମଦ୍ୟ ଓ ବର୍ଷାରେ ଏପରି ଦୁର୍ମୁଖ ହୋଇଥିଲା ଯେ, ତା' ପଛରେ ଚାଲିବା ମୋ ପକ୍ଷରେ ଏକ ଯନ୍ତ୍ରଣା ହୋଇ ପଡ଼ିଲା । ଯାହା କାଳରେ କ'ଣ କହିବି ଆଉ ? ଟର୍ଚ୍ଚଟା ଆଣିଥିବାରୁ ରକ୍ଷା ହେଲା । କାରଣ ଝାରସୁଗୁଡ଼ା ଗାଡ଼ିରେ ଆଲୁଅ ନ ଥାଏ । ଶେଷ ମେଲାଇ ଶୋଇପଡ଼ିଲି । ଝାରସୁଗୁଡ଼ାରେ ଗାଡ଼ି ପହଞ୍ଚିବାର ଅନେକ ପରେ ଚପରାଶି ରଘୁ ଆସି କବାଟ ଖୋଲିବାକୁ ଡାକିଲା । ଉଠି ଦେଖେ ତ ସାରା ଗାଡ଼ି ଖାଲି । ଅନ୍ୟ ଗାଡ଼ି କେତେବେଳେ ପହଞ୍ଚି ସିବା ଉପରେ । ସେ ପର୍ଯ୍ୟନ୍ତ ଶ୍ରୀମୁଖ ନିଜ ବର୍ଥରେ ଶୋଇଥିଲା । ଖୁବ୍ ସମ୍ଭବତଃ କିଏ ଉଠେଇବାରୁ ଉଠି ଆସିଲା । ଯାହାହେଉ ଯେ କୌଣସିମତେ ଦୌଡ଼ି ଆର ଟ୍ରେନ୍ ଧରିଲୁ ।

ଏଠାରେ ଏଥର ଅନେକ ଓଡ଼ିଆଙ୍କ ସଙ୍ଗେ ଦେଖାହେଉଛୁ । ଶୁଣି ଆଶ୍ଚର୍ଯ୍ୟ ହେବ ଯେ ଏଠା ମ୍ୟୁନିସିପାଲିଟିର ପ୍ରେସିଡେ଼ଣ୍ଟ ଜଣେ ଓଡ଼ିଆ ଓକିଲ ମିଃ ସ୍ୱରୁ । ଅନେକ ଓଡ଼ିଆ ଅଫିସ ଚାକିରିରେ ଅଛନ୍ତି । କିନ୍ତୁ ସେମାନଙ୍କର କୌଣସି ସଂଘବଦ୍ଧ ଜୀବନ ନାହିଁ ବା ଜାତୀୟ ଚେତନା ନାହିଁ । ସେମାନେ ସାମାନ୍ୟ ଚେଷ୍ଟାକଲେ ଓଡ଼ିଆ ଭାଷା ଶିକ୍ଷାର ସମସ୍ତ ସୁବିଧା ବର୍ତ୍ତିମାନ କରି ଦିଅନ୍ତେ, କିନ୍ତୁ ସେମାନେ ନିଃଶ୍ଚେଷ୍ଟ । ଏଇକ୍ଷଣି ଏଠାର ଷ୍ଟେଟ୍ ଅଫିସର ଫାଇନାନସ୍ କ୍ଲାର୍କ ଶ୍ରୀଯୁକ୍ତ ଶ୍ୟାମାଚରଣ ତ୍ରିପାଠୀ ମୋଠାକୁ ଦେଖା କରିବାକୁ ଆସିଥିଲେ । ସେ ଓଡ଼ିଆ ହେଲେ ହେଁ ତୁଳସୀ ରାମାୟଣ, କାଣ୍ଡକୁ କାଣ୍ଡ ଗାଇ ପାରିବେ । ସେଥିପାଇଁ ଅନେକ ହିନ୍ଦି ସାହିତ୍ୟିକମାନଙ୍କଠାରୁ ପ୍ରଶଂସାପତ୍ର ପାଇଛନ୍ତି । ମତେ ତୁଳସୀଦାସ ରାମାୟଣରୁ କିଛି କିଛି ଓ ସ୍ୱପ୍ନେଶ୍ୱର ଦାସ କବିଭୂଷଣଙ୍କର ଓଡ଼ିଆ ଅନୁବାଦରୁ କିଛି କିଛି ଶୁଣାଇ ଆପ୍ୟାୟିତ କଲେ ଓ ମୋଠୁ ଗୋଟିଏ ସାର୍ଟିଫିକେଟ୍ ନେଇ ବିଦାୟ ହେଲେ ।

ଏଠାର ବାଳିକା ବିଦ୍ୟାଳୟ ନେଇ ବଡ଼ ଘଣ୍ଟଣ୍ଟକେଟ ଲାଗିଛି । କାଲି ଦଳେ ମାର୍‌ବାଡ଼ୀ ଆସି ମତ ଦେଖାଇଲେ । ସେମାନେ ଚାହାନ୍ତି ଖ୍ରୀଷ୍ଟିୟାନ୍ ମିଷ୍ଟ୍ରେସ୍‌ମାନଙ୍କୁ ତଡ଼ି ହିନ୍ଦୁ ମିଷ୍ଟ୍ରେସ୍ ରଖିବାକୁ, କାରଣ ହିନ୍ଦୁ ସଂସ୍କୃତି ବ୍ୟାହତ ହେଉଛି । ମାରବାଡ଼ୀ ମୁଖରେ 'ସଂସ୍କୃତି'ର କଥା ଶୁଣି ମୁଁ ମନେ ମନେ ହସିଲି । ତେଣେ ସ୍କୁଲକୁ ଯାଇ ଦେଖିଲି ଯେ, ପ୍ରାଇମେରୀ କ୍ଲାସ ମାନଙ୍କରେ ସାମାନ୍ୟ କେତେକ ମାତ୍ର ମାରବାଡ଼ୀ ବାଳିକା ପଢ଼ନ୍ତି । ଉପର ଶ୍ରେଣୀରେ ତାଙ୍କର ଦେଖାଇ ନାହିଁ । ପରିଦର୍ଶନରେ ବୁଝୁଛି ଯେ, ମାଷ୍ଟ୍ରାଣୀମାନଙ୍କର ବିଶେଷ ଦୋଷ ନାହିଁ । ଅବଶ୍ୟ ଦୁଇ ଖ୍ରୀଷ୍ଟାନ୍ ଓ ଅନ୍ୟତର ହିନ୍ଦୁ ମିଷ୍ଟ୍ରେସ୍‌ମାନଙ୍କ ଭିତରେ ଝଗଡ଼ା ଲାଗି ରହିଛି । କିନ୍ତୁ ସ୍ୱାମୀମାନଙ୍କ ଭିତରେ ଓ ମାଷ୍ଟ୍ରାଣୀମାନଙ୍କ ଭିତରେ କଳି ତ ପରିଚିତ ଘଟଣା ।

ହିନ୍ଦୁ ମାଷ୍ଟ୍ରାଣୀଟିକି ମୁଁ ଆରବର୍ଷ ଚୁଇଖାଦାନ୍‌ରେ ଦେଖିଥିଲି । ସେ ସେଠାରୁ ରେଷ୍ଟହାଉସକୁ ଆସି ମୋ ଆଗରେ ରୋଦନ କରିବାକୁ ଲାଗିଲି । କାରଣ ଷ୍ଟେଟ୍ ଅମଲାତନ୍ତ୍ର ତାକୁ ତାର ଛୁଟି ଓ ଦରମା ସହଜରେ ଦେଉନାହାନ୍ତି । ମୁଁ ଡେପୁଟୀ ଇନ୍‌ସ୍ପେକ୍ଟରକୁ କହି ସେତକ ତୁରନ୍ତ କରେଇ ଦେଇଥିଲି । ଆଜି ସକାଳେ ସେ ତା'ର ମା ସହିତ ଆସିଲି, ଖଣ୍ଡେ ସାର୍ଟିଫିକେଟ୍ ପାଇଁ । କାମ ଭଲ କରୁଛି । ତଥାପି ମୁଁ ସାର୍ଟିଫିକେଟ ପାଇଁ ନାରାଜ ଥିଲି । କିନ୍ତୁ କଥାପ୍ରସଙ୍ଗରେ ସେ କହିଲି, ମୋର ତାପ୍ରତି ପୂର୍ବର ଦୟାର କଥା ଓ ସେ କିପରି ନିଜ ଚେଷ୍ଟାରେ ଓଡ଼ିଆ ଲେଖି ଓ ପଢ଼ି ଶିଖିଲାଣି ଓ ଆରବର୍ଷକୁ ପରୀକ୍ଷା ଦେବ ଓଡ଼ିଆରେ । ମୁଁ ସାର୍ଟିଫିକେଟ୍ ଦେଲି । ତା'ପରେ ତା'ର ବାପ ଏକ ଶିକ୍ଷକ । ସେ ଯମୁନାଲାଲ ବଜାଜର ପିଲାଙ୍କୁ କେବେ ପଢ଼ାଉଥିଲା ।

ଏଠି ଏଥର ଆଉ ଏକ ମହନ୍ତଲୋକକୁ ଭେଟିଲି, ତାଙ୍କର ନାମ ଲୋଚନ ପ୍ରସାଦ ପାଣ୍ଡେ । ସ୍ୱାଙ୍କ ଘର ସମ୍ବଲପୁର ସୀମା ନିକଟ ଚନ୍ଦ୍ରପୁର ଜମିଦାରୀରେ । ଏ ବର୍ତ୍ତମାନ ବୃଦ୍ଧ । ପିଲାଦିନେ ସମ୍ବଲପୁରରେ ଶିକ୍ଷାଲାଭ କରିଥିଲେ । ତେଣୁ ଓଡ଼ିଆ ଉତ୍ତମରୂପେ ଜଣା । କେବଳ ଜଣା କହିଲେ ହେବନି, ସେ କେତେକ ଓଡ଼ିଆ କବିତା ବି ଲେଖିଛନ୍ତି । 'ମିବାର' ଉପରେ ଗୋଟିଏ କବିତା ଅବୃତ୍ତି କଲେ । ତାହା ପ୍ରକୃତିରେ ସୁରଚିତ ହୋଇଛି । ସ୍ୱାଙ୍କ ଭାଇ ମୁରଲୀଧର ପାଣ୍ଡେ ଓ ମୁକୁଟଧାରୀ ପାଣ୍ଡେ, ଉଭୟେ ହିନ୍ଦି ସାହିତ୍ୟିକ । ଏଇ ପାଣ୍ଡେ—ଭାଇମାନେ ଫକୀର ମୋହନଙ୍କ ଲଛମା, ମାମୁଁ ଓ ଅନେକ ଓଡ଼ିଆ କବିତା ହିନ୍ଦୀରେ ଅନୁବାଦକରି ପ୍ରକାଶକରି ଯଶ ଅର୍ଜ୍ଜନ କରିଛନ୍ତି । ଲୋଚନ ପ୍ରସାଦ ପାଣ୍ଡେ ଓଡ଼ିଶାର ସବୁ ନେତା ଓ ସାହିତ୍ୟିକମାନଙ୍କୁ ଜାଣନ୍ତି । ଗଙ୍ଗାଧର ମେହେର ଓ ମଧୁସୂଦନ ରାଓଙ୍କର ଅନେକ ଚିଠି ତାଙ୍କ ପାଖରେ

ଅଛୁ । ମୁଁ ମାଗିବାରୁ ସେ ସେଗୁଡ଼ିକ ମତେ ଆନନ୍ଦର ସହିତ ଦେବାକୁ ସ୍ୱୀକୃତ ହୋଇଛନ୍ତି । ବୁଢ଼ା ପାଣ୍ଡେ ବର୍ତ୍ତମାନ 'ମହାକୋଶଳ ହିଷ୍ଟୋରିକାଲ ସୋସାଇଟି' ନିଜେ ଗଢ଼ି, ସି. ପି.ର ଲାଟ ପ୍ରଭୃତିଙ୍କୁ ଏହାର ପୃଷ୍ଠପୋଷକ କରେଇ ନେଇଛନ୍ତି ଏବଂ ଧୀରେ ପୂର୍ବୋକ୍ତ ଐତିହାସିକ ଗବେଷଣା କରୁଛନ୍ତି । ସେ ବର୍ତ୍ତମାନ ଏଠାରେ ସୃଜନୀ କରୁଥିବା ଏକ ସ୍ତୁପ ପାଖରେ ଅଛନ୍ତି । ନିଜେ ଆସି ପରିଚୟ ନଦେଇ ଥିଲେ, ମୁଁ ତାଙ୍କୁ ଆଦୌ ଜାଣି ନ ଥାନ୍ତି । ପାଣ୍ଡେ ଜି ଅତିମାତ୍ରାରେ ଅମାୟିକ ଓ ଭଦ୍ରଲୋକ । କାଲି ତାଙ୍କ ଘରେ ଗୁ ଖାଇ ଆସିଛୁ ।

× × × ×

ଆଜି ରାତିରେ ମୁଁ ଜାଅଳା ସାପଗୁଡ଼ାକ ସ୍ୱପ୍ନ ଦେଖିଲି । ବଡ଼ ଭୟ ହେଲା । ଇତି ।

ମାଷ୍ଟ୍ରା ।



# ଛତିଶ ଗଡ଼ରେ ଓଡ଼ିଆ ପ୍ରଭାବ

ରାୟଗଡ଼

୨୭ । ୧ । ୪୫

ପ୍ରାଣର ହେମ,

ଆଜି ଶାରନ୍‌ଗଡ଼ ଯିବି । ବର୍ତ୍ତମାନ ୧୦ଟା । ଖାଇପିଇ ବୋଧହୁଏ ୧୨ଟା ପରେ ବାହାରିବି । ବସ୍‌ରେ ଯିବାର ଥିଲି, କିନ୍ତୁ ଦେବାନ୍ ଷ୍ଟେଠ୍ କାର୍‌ର ଯୋଗାଡ଼ କରି ଦେବାରୁ ସେଥିରେ ଗଲିଣି ।

ଇତି ମଧ୍ୟରେ ହାଇଅର୍ ( Mr. Higher ) ତାଙ୍କ ସ୍ତ୍ରୀ ଓ ଶାଳୀକା ଏଠି ଆସି ପହଁଚି ଥିଲେ । ଆଜି ସେମାନେ ନନ୍ଦ ଗାଁ ଗଲେ । କାଲି ସକାଳେ ମିସେସ୍ ହାଇଅର ତାଙ୍କ ଭଉଣୀ ଓ ମୁଁ, ଜଣେ ଫରେଷ୍ଟର ସାଥିରେ, କାର୍‌ରେ ରାୟଗଡ଼ ବଜାର ବୁଲି ଯାଇଥିଲୁ । ସେମାନେ ବେଶୀ ଭାବରେ ଅତର କିଣିବାକୁ ବାହାରିଥିଲେ । ଅତର ତ କିଣିଲେ, ଅନ୍ୟାନ୍ୟ ଜିନିଷ ବି କିଣିଲେ । ମୁଁ ଏକ ଇସ୍ତ୍ରୀ କିଣିବାକୁ ବସିଥିଲି । ଦାମ୍ ୭ଟଙ୍କା । ତେବେ ସେଟା ପିତ୍ତଳ ନୁହେଁ, ନିକେଲ୍ । ତେଣୁ କିଣିଲିନି । ରାମକୁ କହିଲେ କଲିକତାରୁ ଭଲ ଇସ୍ତ୍ରୀଟିଏ ଆଣିଦେବ । ଯେତେ ଦାମ୍ ପଡ଼ୁ ପଛେ, ଖଣ୍ଡେ ଏଥର ଘରେ ରଖିବା । ନଚେତ୍ ଚଳୁନି ଜାମ ।

କାଲି ଏଠାର ଓଡ଼ିଆ ଉକିଲ ଓ ମ୍ୟୁନିସିପାଲ୍ କମିଟିର ପ୍ରେସିଡେଣ୍ଟ ମି: ଗୁରୁ ତାଙ୍କ ଘରକୁ ଚା ପାଇଁ ନିମନ୍ତ୍ରଣ କରିଥିଲେ । ମୁଁ ଯାଇଥିଲି । ସେଠି ଜଣେ ଓଡ଼ିଆ ଡାକ୍ତର ( ଏଠାରେ ପ୍ରାକ୍‌ଟିସ୍ କରନ୍ତି ), ହାଇସ୍କୁଲର ଓଡ଼ିଆ ପଣ୍ଡିତ, ଗୁରୁଙ୍କ ବୃଦ୍ଧ ପିତା ଇତ୍ୟାଦି ଅନେକ ଓଡ଼ିଆ ଭଦ୍ରବ୍ୟକ୍ତିଙ୍କ ସଙ୍ଗେ ଆଳାପ ପରିଚୟ ହେଲା । ଏଠାରେ କେତେକ ଓଡ଼ିଆ ଭଲ ହିନ୍ଦି କବିତା ଲେଖୁଛନ୍ତି ବୋଲି ଶୁଣିଲି, ସେମାନଙ୍କ ମଧ୍ୟରୁ ହାଇସ୍କୁଲ ଶିକ୍ଷକ ଜଗମୋହନ ତ୍ରିପାଠୀ ଜଣେ । ତାଙ୍କର ଏବେ 'ବିଶାଳ ଭାରତ'ରେ ଓଡ଼ିଆ ସାହିତ୍ୟ ସମ୍ବନ୍ଧରେ ଗୋଟିଏ ଲେଖା ବାହାରିବ । ମୁଁ ତାଙ୍କୁ କହିଛି ହିନ୍ଦିସାହିତ୍ୟର ବିକାଶ ନେଇ ଓଡ଼ିଆରେ ଏକ ପ୍ରବନ୍ଧ ଲେଖିବାକୁ ।

ଲୋଚନ ପ୍ରସାଦ ପାଣ୍ଡେ ବରାବର ଆସୁଛନ୍ତି । ଖୁବ୍ ସମ୍ଭବତଃ ସେ ମୋ ଦ୍ୱାରାରେ ଆଜ ତାଙ୍କ ଗାଁକୁ ଯାଇପାରନ୍ତି ଏବଂ ଗଂଗାଧର ପ୍ରଭୃତଙ୍କର ଚଠିପତ୍ର ଦେଇ ପାରନ୍ତି ।

ବୁରୁ ଘରୁ ଫେରି ଶୁଣିଲି ଯେ ଦେବାନ୍ ଓ ଫରେଷ୍ଟ ଅଫିସର ମତେ ଆସି ଖୋଜୁଥିଲେ । କିଛି ସମୟ ପରେ ପ୍ରଥମେ ଫରେଷ୍ଟ ଅଫିସର ଓ ପରେ ଦେବାନ୍ ଆସିଲେ । ସେମାନେ ଆସିଥିରେ ଡିନର୍‌ର ନିମନ୍ତ୍ରଣ କରିବାକୁ । ଏଇ ନିକଟ ବଙ୍ଗଳାରେ ହାସ୍ପାର ପରିବାର, ମୁଁ, ଦେବାନ, ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ ଓ ଫରେଷ୍ଟ ଅଫିସର, ସମସ୍ତଙ୍କ ପାଇଁ ଇଂରେଜ ଢଙ୍ଗରେ ଖାନା ତିଆର ହୋଇଥିଲା । ୯ଟା ବେଳେ ପହଁଚିଲୁ, ଗପ ପ୍ରାୟ ଚାଲିଲା ଏକଘଣ୍ଟା, ଫେରିଲୁ ୧୧ଟାରେ । ଡିନାର ପୂର୍ବରୁ ପାନୀୟ ପିଇବାର କଥା । ଫରେଷ୍ଟ ଅଫିସର ଓ ମୁଁ କେବଳ ଲେମନେଡ୍ ପିଇଲୁ । ଅନ୍ୟମାନେ ଜଳମିଶ୍ରିତ ବ୍ରାଣ୍ଡି ପାନ କଲେ । ଡିନାର୍ = କୋର୍ଣ-ଫ୍ୟାପି । ପ୍ରଥମେ ସୁପ୍, ତାପରେ ମାଛର ଫ୍ରାଇ, ତାପରେ ମାଛର ବରା, ତାପରେ ଚକେନ୍ ରୋଷ୍ଟ + କାବେଜ ସିଝ + ଆଳୁ ସିଝ, ତାପରେ ବୀନସ୍ ଓ ମାଂସର କରି ଭାତ, ପରେ ମିଠା । ପ୍ରଚୁର ଖିଆ ହେଲା ।

ଦେବାନ୍ ଶ୍ରୀଯୁକ୍ତ ରଘୁବୀର ସିଂ, ଏକ ଚମତ୍କାର ଲୋକ । ସ୍ୱାଙ୍କ ଘର ୟୁ.ପି. । ରାଜକୁମାର କଲେଜରେ ଶିକ୍ଷକ ଥିଲେ ପୂର୍ବେ । ସୁନ୍ଦର ଇଂରାଜୀ କହେ—ମତେ ବଡ଼ ହିଂସା ହୁଏ । ସୁନ୍ଦର ଗୌରବର୍ଣ୍ଣ ଚେହେରା । ପୋଷାକପତ୍ର ତାକୁ ବେଶ ମାନେ । ବିଲାତ ଯାଇନ । କିନ୍ତୁ ତାର କଥା ଭାଷା ଢଙ୍ଗରଙ୍ଗ ଦେଖିଲେ ମନେ ହେବ ଯେପରି ସେ ଯାଇଛି ଓ ବହୁଭାବରେ ଇଂରେଜ ସମାଜରେ ମିଶିଛି । ମୁଁ ବିଲାତ ଯାଇ ମଧ୍ୟ ଭଲ ଇଂରାଜୀ କହି ପାରେନା ଓ ଇଂରେଜୀସ୍ତାନା ମୁଁ ଭଲଭାବରେ ଅନୁକରଣ କରି ପାରିନ, ଏଥିଲାଗି ମୁଁ ଅନେକ ସମୟରେ ମନେ ମନେ ଲଜ୍ଜିତ ହୁଏ । କାଲି କିନ୍ତୁ ସେ କଥାରେ କଥାରେ ଓଡ଼ିଆଙ୍କ ନିନ୍ଦା କଲେ, ମୁଁ ବି ତାଙ୍କୁ ଜବାବ ଦେଲି । କଥା ପ୍ରସଙ୍ଗରେ ସେ ସବ ସମୟରେ କହିଲେ, 'ମାନସିଂ ସବୁବେଳେ ଟୋକାଲିଆ ଓ ତାଜା ଦେଖାଯାଉଛି କିପରି ? କି ରହସ୍ୟ ସ୍ତାର ? ମୁଁ କହିଲି 'ମୁଁ ଜାଣେନା । କିନ୍ତୁ ହାସ୍ପାର ବରାବର କହେ ଯେ 'ତୁମର ଗୋଲ୍‌ବଫେସ୍ । ତମେ କୌଣସି ରାଣୀର ସେକ୍ରେଟାରୀ ହୋଇଥିଲେ ସ୍ୱାଠୁ ଆହୁରି ମଜାରେ ଥାନ୍ତି ! ସମସ୍ତେ ହସିଲେ ।

ପଅରଦିନ ଏକ ଗାଁକୁ ପରିଦର୍ଶନ ପାଇଁ ଯାଇଥିଲି । ରାୟଗଡ଼ରୁ ମୋଟେ ୩ ମାଇଲ୍ । ଦେଖେ ସାଇଁ ଗାଁଟା ଓଡ଼ିଆ ଗାଁ, ଗଉଡ଼ିଆ ଓଡ଼ିଆ ଓ ମନ୍ତ୍ର ଧନୀ—କୋଠାଘର କରିଛି । ପିଲାବୁଢ଼ା ଅଧିକାଂଶ ଓଡ଼ିଆ । ଗାଁରେ ସେମାନେ ଓଡ଼ିଶୀ ଷ୍ଟାଇଲ୍‌ରେ ଏକ ଦେଉଳ ତୋଳେଇଛନ୍ତି । ଦେଖି ତ କାବା ମୁଁ । ସେମାନେ

କହିଲେ—( ଓଡ଼ିଆରେ ) ଇମିତି ଅନେକ ଓଡ଼ିଆ ଗାଁ ରାୟଗଡ଼ର ପୂର୍ବ ଓ ଦକ୍ଷିଣ ଅଂଚଳରେ ଅଛି । ଗଉନ୍ତିଆ ମତେ ଘରକୁ ଡାକ ନେଲେ । ଜଳଖିଆ ଦେଲେ । ସମସ୍ତେ, ମୁଁ ତାଙ୍କ ଗାଁକୁ ଆସିଥିବାରୁ କୃତକୃତ୍ୟତା ପ୍ରକାଶ କରିବାକୁ ଲାଗିଲେ ।

ଏମେ ବୁଝୁଛୁ ଯେ ଏ ଅଂଚଳରେ ଓଡ଼ିଆ ପ୍ରଭାବ କଳ୍ପନାତୀତ । ଗାଁ କଥା ଛାଡ଼ି ଦିଅ, ଏଇ ରାୟଗଡ଼ ସହରରେ, ଖରାଦିନେ ରାତିରେ ପ୍ରତି ମହଲ୍ଲାରେ ଓଡ଼ିଆ ଭାଗବତ ପଢ଼ାହୁଏ—ଛତିଶଗଡ଼ୀମାନଙ୍କ ଦ୍ୱାରା । ସମସ୍ତ ଛତିଶଗଡ଼ରେ ଓଡ଼ିଆ କାର୍ତ୍ତିକ ପୁରାଣ, ହରିବଂଶ ଆଦି, କାର୍ତ୍ତିକ ମାସରେ ବୋଲାଯାଏ । ଏଠାର ରାଜା, ସଂଗୀତ ପ୍ରେମିକ । ଅନେକ ସମୟରେ ଓଡ଼ିଆ ଗୋଟିପୋ ନାଚ, ପାଲା ଆଦି ଆସି ମାସ ମାସ ଧରି ଏଠି ଖାଣ୍ଟି ଓଡ଼ିଆ ଗୀତ ଗାଇ ଛତିଶଗଡ଼ୀ ଜନତାକୁ ମୁଗ୍ଧକରି ରଖନ୍ତି । ଶୁଣିଲି ରାୟଗଡ଼ ରାଜା ନିଜେ କେତେକ ଓଡ଼ିଆ ଗୀତ ରଚନା କରିଛନ୍ତି ।

ହେମ, ତୁଇ ସବୁବେଳେ ମନେ ପଡ଼ୁଛୁ ରେ । ଉନାର ପ୍ରକୃତି ବର୍ଣ୍ଣନାରୁ ମତେ ଭୁଲ୍ ବୁଝି ଦେବୁ ଯେ ମୁଁ ମଉଜରେ କାଳ କାଟୁଛି । କିନ୍ତୁ ପ୍ରକୃତରେ ତାହା ଆଦୌ ନୁହେଁ । ସମସ୍ତ ବାହ୍ୟ ଘଟଣା ତଳେ ତମର ବିରହ କରାବର ଜୀବନ୍ତ ହୋଇ ରହିଛି । ମୋର ହୃଦୟ ତମରି ପାଖରେ ସବୁବେଳେ ଘୂରାଘୂରି କରୁଛି । ହାତ ଦିଏଁ, ଚୁମ୍ବିଲି । ଯା ।

ବିଦାୟ । ଫେରିଲାବେଳେ ଦିନେ ହୀମଗିରିରେ ଓହ୍ଲାଇ ଫର୍ଣ୍ଣିଚରର ବନ୍ଦୋବସ୍ତ କରିବି ବୋଲି ଭାବୁଛି ।

ଇତି, ପ୍ରିୟ ।



## ଘରଣୀ ହେଉଛି ହେମ

ଖରସ୍ରୋତା ଗଡ଼
୧୦ । ୯ । ୪୫
ସୋମବାର

ସ୍ନେହର ହେମ,

ଏଠାରୁ ଆମେ ୧୩ ତାରିଖ ଦିନ ଚାଲି ଯାଉଛୁ । ଆମର ୧୫ ତାରିଖ ଦିନ ଯିବାର କଥା ଥିଲା । କିନ୍ତୁ ପାରଲାଖେମଣ୍ଡି ମହାରାଜାଙ୍କର ଜ୍ୟେଷ୍ଠପୁଅ ଓ ତାଙ୍କର ଲୋକବାକ ଆସିବାର ଅଛି ୧୩ ତାରିଖରେ । ସେମାନଙ୍କର ରହିବା ପାଇଁ ଏଇ ଗେଷ୍ଟହାଉସ୍ ଛଡ଼ା ଅନ୍ୟ ଜାଗା ନାହିଁ । ତେଣୁ ଆମକୁ ପୋଗ୍ରାମ ବଦଳେଇବାକୁ ପଡ଼ିଲା ।

ଆସିଲା ଦିନ ବାଟରେ ଲଲ୍ଲି ସ୍କୁଲରୁ ଫେରୁଥିବାର ଦେଖିଲି । ବାପାଟି ମୋର ହସି ହସି ନମସ୍କାର କଲା । ସେ ଦୃଶ୍ୟ ମୋର ପ୍ରବାସକୁ ବାରମ୍ବାର ବ୍ୟଥିତ କରି ପକାଉଛି, ପ୍ରିୟଜନର ବିଚ୍ଛେଦ ଯୋଗୁଁ ।

ଏଠାରେ ଆମକୁ ଖାଇବାର ବନ୍ଦୋବସ୍ତ ନିଜେ କରିବାକୁ ହେଉଛି । ଧରିବାରର ନିୟମ ଏହା ହୋଇଯାଇଛି ବୋଲି ଶୁଣିଲି । ଆମର କିଛି ଅସୁବିଧା ନାହିଁ । ସାଙ୍ଗରେ ମିଶ୍ରି-ବାଦାମ ନ ଆଣିଥିଲେ ଅସୁବିଧାଟା ବଢ଼ିଥାନ୍ତା ନିଶ୍ଚୟ ।

ହୁଏତ ମୁଁ ଦୁଇଦିନ ଆଗେ ଯାଇ ସମ୍ବଲପୁରରେ ପହଁଚିବି—ଠିକ୍ ସମୟବେଳକୁ ।

ରବିବାର । ତମକୁ ମାସ୍ଥା ଭଲ ପାଏନା ବୋଲି, ଏକଦମ୍ ଭୁଲ ଯାଏନା ।

ଘରର ସ୍ମୃତି ପ୍ରବାସୀକୁ ମନ୍ଥନ କରେ । ଘର ହେଉଛି ଘରଣୀ । ତେଣୁ ଘରଣୀହିଁ ପ୍ରବାସୀକୁ ମନ୍ଥନ କରେ ।

ଘରଣୀ ହେଉଛି ହେମ
ପ୍ରବାସୀ ହେଉଛି ମାସ୍ଥା
ତେଣୁ ହେମ ମାସ୍ଥାକୁ ମନ୍ଥନ କରେ ।

ଇତି, ପ୍ରିୟ ।



# ପ୍ରାଣ ଆବରଣକାରୀ ସ୍ନେହ

ମାଲଗିର,
୧୮ । ୯ । ୪୫

ପ୍ରାଣର ଲକ୍ଷ୍ମୀ,

ଆମେ ଏଠାକୁ ୧୩ ତାରିଖରେ ଆସିଲୁ । ଏଠାରୁ ୨୨ ତାରିଖରେ ରଣପୁର ଯିବୁ । ବାପା, ବୋଉ ଆସିଲେ କି ନାହିଁ ଜାଣି ନ ପାରି ମୁଁ ଅତ୍ୟନ୍ତ ଉଦ୍‌ବେଗରେ କାଳ କାଟୁଛି । କାଲି ରାତିରେ ଏକ ସ୍ୱପ୍ନ ଦେଖିଲି ଯେଉଁଥିରୁ ଅନୁମାନ ହେଲା, ତମେ ଖଲାସ ହୋଇ ଯାଇଛ ସେପରି । ସେ ସ୍ୱପ୍ନ ହେତୁ ମନ ବେଶୀ ବିଚଳିତ ହେଉଛି । ଏଣେ ଶାରୀରିକ ଓ ମାନସିକ ପରିଶ୍ରମ ଏତେ ପଡ଼ୁଛି ଯେ, ବଡ଼ ଅବସନ୍ନ ବୋଧ ହେଉଛି । କାଲି ହାତୀରେ ୪ । ୫ ମାଇଲ୍ ବସି ଦେହ ପୀଡ଼ା ହେଉଛି । ଆସନ୍ତା କାଲି ୧୦।୧୨ ମାଇଲ୍ ହାତୀରେ ଯିବାକୁ ହେବ । ତା'ପରଦିନ ବି ସେଇପରି ।

ମନେ କରିବନି ହେମ, ମୁଁ ଭୁଲି ଯାଇଛି । ସବୁବେଳେ ମନେ ପଡ଼ୁଛି । ବଡ଼ ସଂକଟ ସମୟରେ ଛାଡ଼ି ଆସିଛି । ସବୁଥର ପରି ପାଖରେ ଠିଆ ହେବାର ଭାଗ୍ୟ ଏଥର ହେବନି ପରା ! ମୋର କୋଳରେ ଆଉଜି ତମେ ଗର୍ଭ ବେଦନା ସବୁଥର ସମ୍ଭାଳ । ଏଥର କ'ଣ ଯେ କରିବ···

ସମସ୍ତେ ମନେ ପଡ଼ୁଛନ୍ତି । ଲକ୍ଷ୍ମୀଟି, ନବାଗତ ଆସିଲା ପରେ କିପରି କାହା ପାଖରେ ରହିବ ? ସମସ୍ତଙ୍କୁ ହୃଦୟର ଗଭୀର ସ୍ନେହ ଓ ଆଶୀର୍ବାଦ ଦେବ । ଲଳିତ ପ୍ରତି ରୁକ୍ଷ ବ୍ୟବହାର ଆଦୌ କରିବ ନାହିଁ ।

ମୋର ପ୍ରାଣର ଆବରଣକାରୀ ସ୍ନେହକୁ ଗ୍ରହଣ କରିବ । ମୁଁ ତମର ବେଦନା ଲାଘବ କରିବ ବୋଲି ବର୍ତ୍ତମାନ ବି ବିଶ୍ୱାସ କରୁଛି ।

ଚୁମ୍ବନ ନେବ । ଇତି,
ପ୍ରିୟ ।

## ଚବିଶ ଘଣ୍ଟା ତମ କଥା ଭାବୁଛି

ପାଟନା

୧୯ । ୧୨ । ୧୯୪୫

ଜୀବନର ପରମ ପ୍ରେୟସୀ ହେମ,

ମୁଁ କଲିକତାରୁ ଏଠିକି ୧୫ ତାରିଖରେ ଆସିଲି । କଲିକତାରେ ୧୩ ତାରିଖ ରେଜିଓରେ କହିଲି, ଏଣୁ ଫେର ଆଉ ଦୁଇଟି ଟକ୍ ଦେଇପାରେ । ଏଠୁ ୨୭ ତାରିଖ ରାତି ବାହାରି କଲିକତାରେ ୨୭ ତାରିଖ ସକାଳେ ପହଞ୍ଚିବି ଓ ୨୮ ତାରିଖ ଦିନ ଉପର ବେଳା ବମ୍ବେ ମେଲ୍‌ରେ ସମ୍ବଲପୁର ଯାତ୍ରା କରିବି । ହୁଏତ ବାଟରେ ବାମରା ପାଇଁ ଯାତ୍ରା ଭଙ୍ଗ କରିବାକୁ ହୋଇପାରେ ।

ଏଠୁ ୧୫ ତାରିଖରେ ବନାରସ୍ ଯାଇଥିଲି । ରହିଲି ବିଜୟକୃଷ୍ଣ ମଠରେ । ହିନ୍ଦୁ ୟୁନିଭରସିଟି, ସାରନାଥ ଓ ବନାରସର ପ୍ରସିଦ୍ଧ ଘାଟ ସବୁ ବୁଲି ଦେଖିଲି । କିନ୍ତୁ ବିଶ୍ୱନାଥଙ୍କୁ ଦର୍ଶନ କରିନାହିଁ । ସେଠି ଭୟଂକର ଶୀତ । ୧୫, ୧୬ ଓ ସତର ତାରିଖ ସେଠି କଟେଇ ଏଠାକୁ ୧୭ ରାତି ଫେରି ଆସିଲି ।

ଏଠି ମହାରଥୀ ବସାରେ ଅଛି—ବସାଟି ଠିକ୍ ଗଙ୍ଗାକୂଳରେ । କିନ୍ତୁ ଆମ ବସା ମଣି ସବୁଠାରୁ ଦୂର । ମୁଁ ଗାଡ଼ିଚଢ଼ା ଦେଇ ଦେଇ ନସ୍ୱାନ୍ତ ହେଇଗଲିଣି । ମହାରଥୀର ଏକ ଘୋର ମଫସଲୀ ବିହାରୀ ଭୃତ୍ୟ ଅଛି । ପ୍ରତିଦିନ ମହାରଥୀ ପ୍ରତିକଥାରେ ତା ଉପରେ ବିରକ୍ତ ହୁଏ କିନ୍ତୁ ଟାଗୋର୍‌ଙ୍କ ପୁରାତନ ଭୃତ୍ୟ ପରି ସେ ଯିବାର ନୁହେଁ । ମହାରଥୀର ଏକ୍ ପଇସା ବଞ୍ଚୁନି । ବିହାର ନିତାନ୍ତ ସାଧାରଣ ଭାବରେ ଥାଏ । ଅନେକ ଦିନ ଉପବାସ । କିନ୍ତୁ ସେ ଏଠାରେ ଯାହା କାମ କରିଛି ଓ କରୁଛି, ତା ଯେମିତି ଆମର ଗର୍ବ କରିବାର କଥା । ମୁଁ ତାଙ୍କ ସମ୍ବନ୍ଧରେ ଶୀଘ୍ରରେ ଏକ ନୋଟ୍ ନିଶ୍ଚୟ ଲେଖିବି । ଏଠାରୁ ମହାରଥୀ—ଆବିଷ୍କୃତ କିଛି ଯନ୍ତ୍ର ନେଇ ଯିବି ।

ପ୍ରାଣର ହେମ, ବରାବରରେ ମନେ କରୁଛି ମୁଁ ତମ ପ୍ରତି କି ଅନ୍ୟାୟ ଅତ୍ୟାଚାର କରିଛି । ମୁଁ ଚବିଶ ଘଣ୍ଟା ତମର କଥା ଭାବୁଛି ଓ ଅନୁତପ୍ତ ହେଉଛି । ଆଶାକରେ ଏଇଥର ତମେ ମତେ କ୍ଷମାର ଯୋଗ୍ୟ ଭାବିବ । ମୋର ଆଶ୍ଳେଷ ଓ ଆଘ୍ରାଣ ଗ୍ରହଣ କରିବ । ସବୁ ଛୋଟସୁଡ଼ିଙ୍କୁ ବିଶେଷତଃ ପୁଷ୍ପଙ୍କୁ ମୋର ହୃଦୟର ବିପୁଳସ୍ନେହ ଜାଣିବ । × × × ବିଦାୟ । × × × ×

ପ୍ରିୟ ।



## 'କମଳାୟନ' କାବ୍ୟ ରଚନା

କଟକ
୧୧ । ୯ । ୪୬

ପ୍ରାଣର ହେମ,

ବଡ଼ ବେଶୀ ରାଗିଛ ଦେଖୁଛି । ମୁଁ ଜାଣେ ଯେ, କାହିଁକି ରାଗିଛ । ମୁଁ କ'ଣ ଜାଣେନା ! କିନ୍ତୁ, ସପ୍ତାହ ସପ୍ତାହ କଟି ଯାଉଛି, ମଲ୍ଲିକ ଅକୁ ପତ୍ରଲେଖିବାକୁ ଯାର ଅବସର ନାହିଁ । ତାର ରାଗିବାର କି ଅଧିକାର ଅଛି ?

ଲଲ୍ଲୁକୁ ଦୁଇଦିନ ଔଷଧ ଆଣି ଦେଲି । ସେ ଆଜି ଭଲ ଅଛି । କାଲି ସ୍କୁଲକୁ ଯିବ । ଏଥର କିଛି ତା'ର ଚିରସ୍ଥାୟୀ ଚିକିତ୍ସାର ବନ୍ଦୋବସ୍ତ କରିବାକୁ ହେବ । କହୁଛି ସେ ହୋମିଓ ଡାକ୍ତରଙ୍କୁ ।

—ର ଫଟୋ ଏନ୍‌ଲାର୍ଜ ହୋଇ ଯାଇଛି ।

ଖଣ୍ଡାଏତ ଭାଇମାନେ ଏକ୍‌ଜୁଟ୍ ହୋଇ ଗୋଟିଏ ପ୍ରେସ୍ କରିବା ପାଇଁ ଏକ କମ୍ପାନୀ କରୁଛନ୍ତି । କିଛି ଟଙ୍କା ଆଦାୟ ହୋଇ ସାରିଲାଣି । ପ୍ରାୟ ୧୦ ହଜାର ଟଙ୍କା ନଗଦ ଦେବାର ପ୍ରତିଶ୍ରୁତି ମିଳିଛି । ପ୍ରେସ୍‌ର ସମସ୍ତଭାର ମୋ ଉପରେ ନଦୁଛନ୍ତି । ମୁଁ ପ୍ରେସ୍‌ର ନାମ ଦେଇଛି ଖାରବେଳ ପ୍ରେସ୍ । ସେଇ ଅନୁସାରେ ବ୍ୟାଙ୍କରେ ହିସାବ ଆଜି ଖୋଲା ହେଲା । ମୁଁ ଓ ବ୍ୟବସାୟୀ ଧନଞ୍ଜୟ ଲେଙ୍କା, ମାନେଜିଂ-ଡିରେକ୍ଟର ଭାବରେ ଟଙ୍କା ସଙ୍ଗେ ସଂପୃକ୍ତ ରହିବୁ । ସମସ୍ତେ ତ ଆଶାକରୁଛନ୍ତି ପ୍ରେସ୍ କୃତକାର୍ଯ୍ୟ ହେବ ବୋଲି । ମୋ ଉପରେ ଭାର ଦିଆଯାଇଛି, ମୁଁ ଗୋଟିଏ ମେକାନିକ୍ ନେଇ ପୁରୀର ଜଗନ୍ନାଥ ଦେଖି ଦରଦାମ୍ କରି ଆସିବି—କମ୍ପାନୀର ବ୍ୟୟରେ । କାଲି ମେକାନିକ୍‌ଟିଏ ମିଳିଲେ, ମୁଁ ଶୁକ୍ରବାରଦିନ ପୁରୀ ଯାଇ ପାରେ । ସକାଳେ ଯାଇ ଜପର ଓଳି ଫେରି ଆସିବି ।

ଏଠି ପ୍ରତିଦିନ ବର୍ଷା ହେଉଛି । କାଲି ସଂଧ୍ୟାବେଳେ ନାହିଁ ନଥିବା ବର୍ଷା ହୋଇଗଲା । କଲିକତାରେ ପୁଣି ଗଣ୍ଡଗୋଳର ଜନରବ ହେଉଛି । 'କମଳାୟନ' କାବ୍ୟର ୪ ଅଧ୍ୟାୟ ଲେଖି ସାରିଛି । ଏହାହିଁ ମୋର ପ୍ରଧାନ କାମ ଏବେ ।

ରାଗିବୁନି ଧନଟି ମୋର । ମୁଁ ଜାଣେ କାହିଁକି ରାଗିଛୁ । ଦୋଷ କ୍ଷମା ମାଗିଲେ ଯାଇଁ ରାଗଛାଡ଼ିବୁ, ନ ହେଲେ ନାହିଁ ?

ଇତି,
ପ୍ରିୟ ।



## 'ଷ୍ଟେଟସ୍‌ମ୍ୟାନ୍' ସଂପାଦକଙ୍କ ଯୋଗାସନ

ବରହମ୍‌ପୁର
୧୧ । ୯ । ୧୯୪୭

ପ୍ରାଣର ହେମ ରେ,

ଅଜ ଅନେକ ଉପଶମ ବୋଧ କରୁଛି । ତଥାପି ମତେ କାଲି ସକାଳ ୭ଟା ବେଳେ ଚକଟୀ ଯିବାକୁ ହେବ । ମୁଁ କ କାଲି ସଂଧ୍ୟାରେ ହିଁ ଫେରି ଆସିବି ବୋଲି ଭାବୁଛି ।

ଯେଉଁ ଖଟ ଆଣିଛୁ, ସେପରି ଖଟ ଏଠି ୧୭ । ୧୮ ଟଙ୍କାରେ ମିଳିବ ବୋଲି ବୁଝିଲି । ସେଠି କାଠ ଯୋଗେଇ ମଧ୍ଯ ତମକୁ ୨୫ ଟଙ୍କା କପରି ପଡ଼ୁଛି ?

( ୧୦ ତାରିଖ ) କାଲି ଷ୍ଟେଟସ୍‌ମ୍ୟାନ୍‌ରେ ସେହି ପତ୍ରିକାର ସାହେବ ସଂପାଦକ କପରି ଯୋଗାସନ ପ୍ରଦର୍ଶନ କରେ ତା'ର ଛବି ବାହାରିଛି ଦେଖିବ । ଆମର ଅନୁଷ୍ଠାନ ଓ ଅଭ୍ୟାସ ସବୁ ଅନ୍ୟମାନେ ପସନ୍ଦ କରୁଛନ୍ତି ଅଥଚ ଆମେ ସେଥିପ୍ରତି ଖାତର୍ କରୁନୁ । ନିତାନ୍ତ ପରିତାପର ବିଷୟ, ମୁଁ ଏଥର ଏକାଦଶୀ, 'ପୂର୍ଣ୍ଣିମା, ଅମାବାସ୍ୟ ପାଳନ କରିବି ଠିକ୍ କରିଛି । ତମେ ପିଲାଙ୍କୁ କ୍ରମେ କ୍ରମେ ପ୍ରାଚୀନ ନିଷ୍ଠାର ସଙ୍ଗେ ପରିଚିତ କରାଅ । କମ୍ ମାଂସ ବ୍ୟବହାର କର । ପର୍ବ ଉପବାସ ଦିନମାନଙ୍କରେ ପୁରା ନିରାମିଷ ରନ୍ଧଣା କର । ଖ୍ରୀଷ୍ଟାନ୍, ମୁସଲ୍‌ମାନ ସମସ୍ତଙ୍କର ଏକପ୍ରକାର ନିଜର ନିଜର ନିଷ୍ଠା ଅଛି, ଆମର ଯାହା ଥିଲା ତା ପ୍ରତି ଆମେ ଅକାରଣ ହେଳା କରିବା କାହିଁକି ?

କୌଣସି ମତେ କଟକ କଲେଜରେ ଚାକିରୀଟା ହେଇଗଲେ, ମୁଁ ମୁକ୍ତି ପା'ନ୍ତି ବୋଲି ଭାବୁଛି ।

ଅଛୁ ଏକପ୍ରକାର । ସ୍ନେହ ନେବ । ପିଲାଙ୍କୁ ଆଶୀର୍ବାଦ ଦେବ ।

ଇତି,
ପ୍ରିୟ ।



# 'ମାନସିଂହ' ଉପାଧି

ବୋଇରାଣୀ
୨୪ । ୯ । ୪୭

ହୃଦୟର ରାଣୀ ମୋର,

ସେଦିନ ରାତି ଦଶଟାରେ ବରହମ୍ପୁରରେ ପହଁଚିଲି । ଖୋର୍ଦ୍ଧାରୋଡ଼ଠାରେ ପ୍ରାୟ ୩ ଘଣ୍ଟା ଅପେକ୍ଷା କରିବାକୁ ପଡ଼ିଲା, ଅନ୍ୟ ଗାଡ଼ି ପାଇଁ । ତେଣୁ ଜଂକ୍‌ସନରେ ପ୍ରସ୍ତାବିତ ହାଇସ୍କୁଲ୍‌ଟି ଦେଖିବାକୁ ଗଲି । ସହର ବାହାରେ ଏକ ବିସ୍ତୀର୍ଣ୍ଣ ଡାଙ୍ଗରରେ ଏଇ ହାଇସ୍କୁଲ୍‌ଟି ତିଆରି ହେଉଛି । ଦୂରରେ ଖଣ୍ଡଗିରି ପାହାଡ଼ ଦିଶୁଛି । ପ୍ରାକୃତିକ ଦୃଶ୍ୟ ଚମତ୍କାର । ସ୍କୁଲଠାରୁ ଅଦୂରରେ ଲକ୍ଷ୍ମୀଧର ନାୟକଙ୍କ ଅର୍ଦ୍ଧ-ସମାପ୍ତ ପଥରଘର ଠିଆହୋଇଛି । କୂଅଟିଏ ଖୋଳା ହୋଇ ସାରିଛି । ଚମତ୍କାର ପାଣି । ୬ ବଖରାର ଘର । ଅନେକ ଦିନ ହେଲା କାମ ବନ୍ଦ ଅଛି ।

କଟକ ଷ୍ଟେସନରେ ମାନଗୋବିନ୍ଦର ବୋକାମୀର ଉତ୍କ୍ରାନ୍ତ ଦୃଷ୍ଟାନ୍ତ ମିଳି-ଗଲା । ସେ ପ୍ଲାଟ୍‌ଫର୍ମରେ ଜିନିଷ ପାଖରେ ଥିଲା । ମୁଁ ୱେଟିଂ ରୁମ୍‌ରେ ଥିଲି । ଗାଡ଼ି ଆସିବାର ଟିକିଏ ପରେ ଯାଇ ଦେଖେ ତ ସେ ନାହିଁ ଓ ଜିନିଷ ବି ନାହିଁ । ମୁଁ ଏପଟ ସେପଟ ଦୌଡ଼ିବାକୁ ଲାଗିଲି । କାହିଁ ତାକୁ ଦେଖିଲିନି । ଶେଷରେ ବିରକ୍ତ ହୋଇ ଠାଏ ଠିଆ ହୋଇଛି, କଳେ କୁଲି ଆସି ପଚାରୁଛି 'ବାବୁ କେଉଁ କ୍ଲାସ୍?' ମୁଁ କହିଲି 'ଫାଷ୍ଟକ୍ଲାସ୍' । ସେ କହିଲା "ଦେଖ ବାବୁ ମତେ ଇଣ୍ଟର କ୍ଲାସ କହି ଏପଟ ସେପଟ କରି ସାରିଲଣି।" ଫାଷ୍ଟକ୍ଲାସ ଭିତରେ ସିମିତ ପଶିଛି, ମୁଁ ରାଗରେ ମୋ ବେତବାଡ଼ିର ଅଗଟା ବୋକାରାମର କାନରେ ନ ଗେଞ୍ଜି ରହି ପାରିଲି ନାହିଁ । ବିରକ୍ତ ହୋଇ ତାକୁ ଆଉ ମୋ ସାଥିରେ ଆଣିନି ପରା ।

ଏଇ ବୋଇରାଣୀ ଆଠଗଡ଼ ଜମିଦାରୀର ହେଡ୍‌କ୍ୱାଟରସ୍ । ପରିତ୍ୟକ୍ତ ପୁରୁଣା ରାଜଧାନୀ ଆଠଗଡ଼ ଏଠାରୁ ୫ ମାଇଲ ମାତ୍ର । ସେଇ ହେଉଛି କବିସୂର୍ଯ୍ୟଙ୍କ ଜନ୍ମସ୍ଥାନ । ସେଠି କିଛି ନାହିଁ । ଆଉ ତାଙ୍କର ସ୍ମୃତି । କବିସୂର୍ଯ୍ୟ ସ୍ମୃତି ସମିତି ବର୍ତ୍ତମାନ ବୋଇରାଣୀରେ । ତା'ର ପ୍ରଧାନକର୍ତ୍ତା ଓ ଶତାବ୍ଦୀର ସଂପାଦକ ଶ୍ରୀ ଶଶୀଭୂଷଣ

ପଟ୍ଟନାୟକ ଏଠା ହାଇସ୍କୁଲରେ ବର୍ତ୍ତମାନ ଏକ ଶିକ୍ଷକ । ମୋର ବିରକ୍ତ ଓ ପ୍ରତିବାଦ ସତ୍ତ୍ୱେ ଏଇ ସମିତି ଆଜି ସଂଧ୍ୟାରେ ଏଠି ଏକ ରିସେପ୍‌ସନ୍‌ର ଯୋଗାଡ଼ କରୁଛନ୍ତି ।

ଆମର 'ମାନସିଂହ' ଉପାଧି ଆଠଗଡ଼ର ଏଇ ଅପସୃତ ରାଜବଂଶର ବୋଲି ମୁଁ ବରାବର ଶୁଣି ଆସିଛୁ । ଏ ଜମିଦାରୀରେ ଆମର ଦୁଇଖଣ୍ଡ ଗ୍ରାମ ବି ଥିଲା । ବନ୍ଦୋବସ୍ତ ବେଳେ ଆମର ଲୋକ ଅନୁପସ୍ଥିତ ହେବାରୁ ତାହା ଷ୍ଟେଟ୍ ସାମିଲ୍ ହୋଇଗଲା । ଏଠାରେ ଏ ଷ୍ଟେଟ୍‌ର ଦେବାନ୍ କ୍ୟାମ୍ପ କରୁଛନ୍ତି, ଆଜି ଦେଖାହେବ । ମୁଁ ତାଙ୍କୁ କହିବି ଏଇ ଇତିହାସର ସତ୍ୟତା ଉଦ୍‌ଘାଟନ କରିବାକୁ; ଏ ସବୁ ଇଂରେଜ ଏ ଦେଶକୁ ଆସିବା ପୂର୍ବର ଘଟଣା ।

ତମର କଥା ବରାବର ମନେ ପଡ଼ୁଛି । ତମେ ସେଠି କି ଅସୁବିଧାରେ ପିଲାଙ୍କୁ ନେଇ ଅଛ ମୁଁ ଏଥର ବେଶୀଭାବରେ ଅନୁଭବ କରୁଛି । ପଦ୍ମନ ଆସିବା ପରେ ଲଲ୍ଲୁ ଓ ଲଳିତଙ୍କର ପଢ଼ାପଢ଼ିରେ ଅବନତି ଘଟିଛି । ମି : ହାରିସନ୍ ଙ୍କ ସାକ୍ଷାତ କରି ବୁଝିଲି, ଲଲ୍ଲୁ ବର୍ଷାରମ୍ଭରେ ଖୁବ୍ ଭଲକରିଛି ପରୀକ୍ଷାରେ, ତା ପରେ ପରେ କଲୁ ବରାବର ଖରାପ କରୁଛି । ଲଳିତ ତ ମୋଟେ ପ୍ରୋଗ୍ରେସ କରୁନି । ଲଳିତର ସ୍ୱାସ୍ଥ୍ୟ ବି ମତେ ଉଦ୍‌ବେଗ ଦେଉଛି । ମୁଁ ଭାବୁଛି ପୂଜା ପରେ ଘରେଇ ତମମାନଙ୍କୁ ଧରି ଗୁନ୍ନା ଆସିବି । ଲଲ୍ଲୁ, ଲଳିତ ତାଙ୍କ ସ୍କୁଲରେ ପରୀକ୍ଷା ଦେବାକୁ ଅପେକ୍ଷା କରିବାରେ କିଛି ଲାଭ ନାହିଁ, କାରଣ ସେ ସ୍କୁଲର ସାର୍ଟିଫିକେଟ୍‌ର ମୂଲ୍ୟ ଇଣ୍ଡିଆନ ସ୍କୁଲରେ ଧରି ହେବନି; ପୁଣି ବିନା ପରୀକ୍ଷାରେ । ତାଙ୍କ ସ୍କୁଲର ଜଣେ ଶିକ୍ଷକ ମିଃ ପଟ୍ଟନାୟକ ଏବେ ସେଠା ଗୁଡ଼ ଖଲିକୋଟ କଲେଜିଏଟ୍ ହାଇସ୍କୁଲର ହେ: ମା: ହୋଇ ଆସିଛନ୍ତି । ତାଙ୍କ ପିଲାମାନଙ୍କୁ ସେ ଅଧାରୁ ଛଡ଼ାଇ ଆଣିଛନ୍ତି । ଲଲ୍ଲୁ ଲଳିତ ଯାହା ପଢ଼ିବାର ତ ବର୍ଷଯାକ ପଢ଼ିଲେ; ପରୀକ୍ଷା, ଏଣିକି ତାଙ୍କ ସ୍କୁଲରେ ଅଥବା ଅନ୍ୟ ସ୍କୁଲରେ ଦେବେ । ତାଛଡ଼ା ତମକୁ ହୋମିଓ ଚୂର୍ଣ୍ଣ ଉପରେ ନିର୍ଭର କରି ମୁଁ ଛାଡ଼ି ପାରୁନି । ତମକୁ ତୁରନ୍ତ ଅଲୋପ୍ୟାଥି ଚିକିତ୍ସା ନେବାକୁ ହେବ, ବିଶେଷତଃ ବରହମ୍ପୁରରେ ଯେତେବେଳେ ତମର ବିଶ୍ୱାସୀ ଓ ଯୋଗ୍ୟ ଚିକିତ୍ସକ ଅଛି ।

କାଲି ଏଠୁ ପଳେଇବି । ବରହମ୍ପୁର ଫେରିବି ୨୬ରେ । ମୋର ଗଭୀର ଆଶ୍ଳେଷ ଗ୍ରହଣ କରିବ । ଇତି ।

ପ୍ରିୟ ।



## ଧୀର ଧୀର ଲୁହ ବହିଗଲା

ବରହମ୍ପୁର
୧୭ । ୧୦ । ୪୭

ପ୍ରିୟତମ ପ୍ରଭିମା ହେମ,

ତମର ପତ୍ରଟି ଏତେ ମଧୁର ଓ ଏତେ ଦୁଃଖଦାୟକ ହେବ ବୋଲି କଳ୍ପନା କରି ନ ଥିଲି । ପଢ଼ିଲି, ଖୁସୀ ହେଲି, ରଖି ଦେଲି । କିଛିକ୍ଷଣ ପରେ ଖବର କାଗଜରୁ ମନ ଫେରି ଆସିଲା ପୁଣି ତମର ପତ୍ରକୁ । ଧୀର ଧୀର ହୋଇ ଲୁହ ବହିଗଲା । ତମର ଘର ନାହିଁ, ପିଲାମାନେ ଅନ୍ୟଗୃହରେ ଆଶ୍ରୟ ନେଇଛନ୍ତି, ଭବିଷ୍ୟତ ଅନିଶ୍ଚିତ, ତମର ସଙ୍କଟ ଅବସ୍ଥା, କିପରି ଓ କେଉଁଠି ରହିବ ଏଇ ଦ୍ୱନ୍ଦ୍ୱରେ ତମେ କିଛି ଠିକ୍ କରି ପାରୁନ । ଲକ୍ଷ ଲକ୍ଷ ଲୋକ ଗାଁ ଘର ଛାଡ଼ି ପଳାୟିତ, କ୍ଷୁଧାର୍ତ୍ତ କୁକୁର ପରି ରାସ୍ତାକଡ଼ରେ ମରୁଛନ୍ତି । ମୋର ଓ ମୋ ପିଲାଙ୍କର ଭାଗ୍ୟକୁ ସେଇମାନଙ୍କ ସ୍ତରକୁ ନେଇଗଲି; ଅଶ୍ରୁହିଁ ଏକମାତ୍ର ଆଶ୍ୱାସନା ଦେଖିଲି ।

ମୋର ଏକାନ୍ତ ଇଚ୍ଛା ତମେ ଓ ପିଲେ ସେ ଜଙ୍ଗଲରୁ କିପରି ଦୂରରେ ରହିବ । ତମେ କୌଣସିମତେ ଆମ ନୂଆ ଘରକୁ ଯାଇ ରହି ପାରନ୍ତ ବୋଇଲେ ମୋର ତମକୁ ଏଠିକି ଡାକିବାର କୌଣସି କାରଣ ନ ଥାନ୍ତା । × × × ×

ଏ ବଙ୍ଗଳାର ଚୌକିଦାରର କୁକୁଡ଼ା ଓ ଛେଳି ଅଛନ୍ତି । ବାବୁଲିକୁ ସେଇମାନେ ଆନନ୍ଦ ଯୋଗାଇବେ । ଏଠି ସଫା ଜାଗା ଅନେକ ଅଛି, ସେ ବୁଲିବ । ତମର ଆସିବା ପାଇଁ ଘର ଫର ସବୁ ସଫାସଫି ହୋଇ ରଖାହେଲାଣି । ଗୋଟେ ଟବ୍‌ର ବନ୍ଦୋବସ୍ତ ବି କରୁଛି । ବେଶୀ ଜିନିଷ ଆଣିବାନି । ମୁଁ ତ ବରାବର କିଣିବ ସିନା । ଯାହା ଦରକାର ହେଉଥିବ, ମୁଁ ମଝିରେ ମଝିରେ ଆଣିବ । ମୁଁ ଖୁବ୍ ସମ୍ଭବତଃ ପୁଷ୍ପ-ଲୋକାଲ୍‌ରେ କଟକ ଯିବ । ଏଠାରୁ କିଛି ଉତ୍ତମ ରଣିଖରା ନେଉଛି ।

ଏକ ବୋତଲ ହରଲିକ୍‌ସ୍ ପାଇଛି । କିନ୍ତୁ ଏପରି ଦୁର୍ଲଭ ବିଦେଶୀ ଜିନିଷ ଉପରେ ନିର୍ଭର କରିବା ଏକଦମ୍ ପରିତ୍ୟାଗ କର । କାଳ କ୍ରମେ କ୍ରମେ ଅଧିକ ଅନିଶ୍ଚିତତା ଆଡ଼କୁ ଯାଉଛି । ଇତି ।

ପ୍ରିୟ ।



# ନଗ୍ନ ଚନ୍ଦ୍ରାନ୍ତ

କଟକ ଗେଷ୍ଟହାଉସ
୮ । ୧୧ । ୧୯୪୭

ପ୍ରାଣର ହେମ,

ତମର ପତ୍ର ଏଇଠି କାଲି ପାଇଲି, ପଢ଼ି ଖୁବ୍ ଖୁସୀ ହେଲି । ଏ ପତ୍ରଟି ମୋର ସାଇତା ସଂପଦ ହୋଇ ରହିବ । ତମପ୍ରତି ମୁଁ ଯେତେ ଯେତେ ଘୋର ଅପରାଧ କରିଛି, ସେ ସମସ୍ତର ଏ ପତ୍ରଟି ଗୋଟିଏ ଚଟକଣ । ମୁଁ ଏହାକୁ ବାରମ୍ବାର ଦେଖୁଥିବି ଏବଂ ମୋର ହୀନତାକୁ ଅନୁଭବ କରୁଥିବି, ତେବେ ଯାଇଁ ମୋର ଶିକ୍ଷା ହେବ । ମୁଁ ଯେ ସେଦିନ ଆସିଲି ଘରୁ, ତମକୁ ରାଗି କରି ନୁହେଁ, ତମ୍ଭ ଆଉଦିନ କଟକରେ ଆଉ କିଛି କାମ ନ ଥିଲା ବୋଲି ଚାଲି ଆସିଲି । ତେବେ ମତେ କ'ଣ ତମେ ପରିତ୍ୟାଗ କରି ରାଗିଯାଇ ଯାଇନା ? କ୍ଷମାକର, ଏତେ ରାଗିଲେ ଚଳେ କି ? ସ୍ୱୀକାର ତ କରିଛ ମୋ ଛଡ଼ା ଆଉକୁ ଜାଣନା ବୋଲି, ଅନୁଭବ ତ କରିଛ, ମତେ ସବୁବେଳେ ସନ୍ନିଧିରେ ପାଇବାକୁ ଚାହଁ ଓ ତାହା ନ ପାଇବାରୁହିଁ ମୋ ଉପରେ ଯେତେ ଅତ୍ୟାଚାର, ତେବେ ଏପରି ପ୍ରିୟ ଓ ଆପଣାର ଲୋକକୁ ସଂପର୍କ ଶୂନ୍ୟକରି ଦୂରକୁ ଠେଲିବା ସମ୍ଭବ ଓ ଉଚିତ କି ? ମୁଁ ଏଠୁ ଯାଇ ନୂଆ ଘରେ ରହିବାର ପ୍ରସ୍ତାବ ଶୁଣି ତମେ ବୋଧହୁଏ ଆହୁରି ଖପ୍‌ପା ହୋଇ ଉଠିଛ । ମୋ ପ୍ରସ୍ତାବର ମାନେ ନୁହେଁ ଯେ ମୁଁ ମହମଦିଆ ବଜାର ମାଡ଼ିବିନି, ମୋର ଉଦ୍ଦେଶ୍ୟ ଏହି ଯେ, ନୂଆଘରକୁ କେନ୍ଦ୍ର କରି ଏଣେ କଲେଜ ଓ ତେଣେ ମହମଦିଆ ବଜାରକୁ ମୁଁ ତନ୍ତ୍ରୀକଣ୍ଠା ପରି ଏପଟ ସେପଟ ନ ହେଲେ, ଆମ ଅର୍ଥର ପ୍ରକୃତ ସାର୍ଥକତା ଆମେ ପାଇବାନି । ଗୋଟିଏ ରୁମ୍‌ରେ ମୁଁ ଯାଇ ମୋର ବହି ଦ'ଖଣ୍ଡ ନେଇ ବସେ, ମୁଁ ଅନୁଭବ କରେଁ ଯେ ମୋ ଘରେ ମୁଁ ରହିଲି । ତାପରେ ଦେଖ କି ପରିବର୍ତ୍ତନ ହେବ ।

କାଲି ସଂଧ୍ୟାରେ କୋଟପାଡ଼ରୁ ଫେରି ଏଠାରେ ଡିପି ଆଇଙ୍କଠୁଁ ଟ୍ରାନ୍‌ସଫର୍ ଟେଲିଗ୍ରାମ ପାଇଲି । କଲୁ ଅଶ୍ଚର୍ଯ୍ୟର ବିଷୟ ସେଥିରେ ମୋର ନିଯୁକ୍ତି ଆସିଷ୍ଟାଣ୍ଟ ପ୍ରଫେସର ଭାବରେ । ଅଥଚ ମନ୍ତ୍ରୀଠୁ ସଭିଏଁଙ୍କ ମୁହଁରୁ ଶୁଣିଛି ମୋର ନିଯୁକ୍ତି

ପ୍ରଫେସର୍ ଖବରେ ହେଉଛୁ । ମୋର ଏକବର୍ଷ ଭିତରେ ଘନ ଘନ ପରିବର୍ତ୍ତନ ଓ ବର୍ତ୍ତମାନର କଥା ସଂଗେ କାର୍ଯ୍ୟର ଅମେଳ ଦେଖି ମୋର ବର୍ତ୍ତମାନ ଗଭୀର ସଂଦେହ ହେଉଛୁ ମୋ ବରୁଦ୍ଧରେ ନିଶ୍ଚୟ କଛୁ ନଗୂଢ଼ ଚକ୍ରାନ୍ତ ଚ୍ଲୁଛୁ । କାହାକୁ କଛୁ କହିବନ । ମୁଁ ତ ସରକାରୀ ଆଦେଶ ମାନବ ଇଁ, କାରଣ ମତେ ତ ଚାକିରି କରିବାକୁ ଇ ହେବ । ତେଣୁ ପୂର୍ବର ଚପଳ ବିକ୍ଷୋଭରେ ଲାଭ କ'ଣ ? ମନଟା କନ୍ତୁ ଭୟଙ୍କର ଦବ ଯାଇଛୁ । କାଲି ରାତଯାକ ଏଇ କଥା ଭାବି ଭାବି ମତେ ଭଲ ନଦ ହେଲାନ ।

ଏଠି ବହ୍ମମ ଦେବଙ୍କ ସଙ୍ଗେ ଦେଖା ହେଲାଣି ଦୁଇଥର । ଅତି ପଣ୍ଡିତ ଲୋକ, କନ୍ତୁ ରାଜା ହେବାର ଅନୁପଯୁକ୍ତ । ତା' ଆଖି ଆଗରେ ତେଲେଙ୍ଗାଗୁଡ଼ାକ ଷ୍ଟେଟ୍‌ଟାକୁ ଲୁଟି କରି ଖାଇ ଯାଉଛନ୍ତି, ସେ କଛୁ କରୁ ନାହାନ୍ତି । ଏ ଆନ୍ଧ୍ରମାନଙ୍କର ଦୌରାତ୍ମ୍ୟ ଦେଖି ଦେଖି ମୋର ଶୀତଳ ରକ୍ତ ବ ଗରମ ହୋଇ ଉଠୁଛୁ । ମହାରାଜାଙ୍କ ଗ୍ରନ୍ଥାବଳୀ ଖଣ୍ଡିଏ ପାଇଛୁ । ସେଥିରେ ବହୁତ ଉପଭୋଗ୍ୟ ପଦାର୍ଥ ଅଛୁ ।

ମୁଁ ଏଠୁ ୧୫ ତାରିରେ ଲେଉଟିବାର କଥା । କନ୍ତୁ ଟେଲଗ୍ରାମ ପାଇବାରୁ ମୁଁ କାଲି ୧୩ ତାରିଖ ବୋଧହୁଏ ଏଠୁ ବାହାରିବ । ବରହମ୍‌ପୁର ଗଲେ, କଟକ କେବେ ଯିବ ସ୍ଥିର କରିବ ।

ବାବୁଲ୍‌କୁ ମୋର ଚୁମ୍ବନ ଦେବ । ଲକ୍ଷ୍ମୀ, ମୋର ଗଭୀର ଆଘ୍ରାଣ ଓ ଆଶ୍ଳେଷ ପାଉଥିବାର ଅନୁଭବ କରୁ... ... ... ... ।

ପ୍ରିୟ ।



# ପ୍ରାଣ ଛଟ୍‌ପଟ୍ ଛଟ୍‌ପଟ୍

ପାଟ୍‌ନା ହାଉସ୍
ସମ୍ବଲପୁର
୩୦ । ୧୦ । ୪୯
ରବିବାର-ସକାଳ

ନିକଟତମ ଲକ୍ଷ୍ମୀ,

ବିଶ୍ୱାସ ହେଉନି ଯେ ମୁଁ ମାତ୍ର ଆର ରବିବାର ଦିନ, ଏଇ ସାତ ଦିନ ପୂର୍ବେ, ତୁମକୁ ଛାଡ଼ି ଆସିଛି । ମତେ ଲାଗୁଛି ଯେପରି ବହୁବର୍ଷ ଧରି ତୁମକୁ ଦେଖିନି । ପ୍ରାଣଟା ଛଟ୍‌ପଟ୍ ଛଟ୍‌ପଟ୍ ଭୟଙ୍କର ହେଉଛି । ନିତାନ୍ତ ନିକଟରେ ଦେଖାହେବାର ସମ୍ଭାବନା ନଥିବାରୁ ବ୍ୟସ୍ତତାର ମାତ୍ରା ବଢ଼ିଯାଉଛି । ଡିସେମ୍ବର ୭ ତାରିଖରେ ଆକାଡ଼େମିକ୍ କାଉନ୍‌ସିଲ୍‌ରେ ଯୋଗ ଦେବାକୁ ହେବ ମତେ । ତା ପୂର୍ବରୁ କୌଣସି ଦିନର ମୋ ପ୍ରତି ଦୟାଶୀଳତା ଏ ପର୍ଯ୍ୟନ୍ତ ଧରାପଡ଼ୁନି । ଡିସେମ୍ବର ଶେଷକୁ ଅବଶ୍ୟ ନିସ୍ତାର୍ ଅଛି । ତମେ ସବୁ ଆସିବ କି ନାହିଁ ମୁଁ ଆକାଡ଼େମିକ୍ କାଉନ୍‌ସିଲ୍‌କୁ ଗଲାବେଳେ ଠିକ୍ କରିବା ।

ଘର ଏ ପର୍ଯ୍ୟନ୍ତ ମିଳିନି । ଆଜି ରବିବାର—ତେଣୁ ମୁଁ ଏଠାରୁ ଜିନିଷପତ୍ର ଗୋଟାଗୋଟି କରି ପ୍ରିନ୍‌ସିପାଲ୍ କ୍ୱାର୍ଟର୍‌କୁ ଚାଲିଯିବି ଭାବୁଛି । ଘରଟା କାଲି ଧୂଆ ଧୋଇ କରି ହୋଇ ଯାଇଛି । ଗାଡ଼ିକଟିଏ ଅଳ୍ପ ଖର୍ଚ୍ଚରେ ଠିଆ କରିବାର ବନ୍ଦୋବସ୍ତ କରୁଛି । ବ୍ରୁକ୍‌ସ୍‌ହିଲ୍‌ରେ ଯେଉଁ ବଙ୍ଗାଳୀ ଇନ୍‌ଷ୍ଟ୍ରକ୍ଟର୍ କାମ କରୁଥିଲେ, ସେ ବି ଏଠି କଲେଜରେ କାମ କରୁଛନ୍ତି । ସେ ଦେଖା କଲେ କାଲି, ପିଲାପିଲିଙ୍କ କଥା ପଚାରିଲେ ମୁଁ କେବଳ ମୁଣ୍ଡ ଟୁଁ ଗାରିଲି । ସମ୍ବଲପୁର ସେଇପରି ଅଛି, କିନ୍ତୁ ମୋର ପ୍ରିୟତମ ଗଣ୍ଠି ଏଇ ମାଟିରେ ହଜିଯାଇଥିବାରୁ, ଏଇ ସୁନ୍ଦର ଭୂମିର ଆକର୍ଷଣ ମୋ ପ୍ରାଣକୁ ଆଉ ସ୍ପର୍ଶ କରୁନି । ପୂର୍ବର ଚିହ୍ନା ପରିଚିତ ଲୋକ, ତାହାକୁ ଦେଖିବାକୁ ବି ଇଚ୍ଛା ହେଉନି । ବ୍ରୁକ୍‌ସ୍‌ହିଲ୍‌ରେ ଆଖି ପଡ଼ିଲେ ବି ଅନ୍ତସ୍ଥଳରେ ହୃଦ୍‌ଭେଦ ପରି ଅନୁଭବ ହେଉଛି । ମୁଁ ଜାଣେନା, ଏପରି ମାନସିକ ଅବସାଦ ଅନ୍ତର୍ଦେଶରେ ବହନକରି ମୁଁ କେତେ ଦିନ କର୍ତ୍ତବ୍ୟକର୍ମ ସମ୍ପାଦନ କରି ପାରିବି ।

ତମେ ଚିଠି ଦେଉନା କାହିଁକି ? ଖୁବ୍ ବ୍ୟସ୍ତ ଅଛ ? ଲେଖିବାର କିଛି ନାହିଁ ବୋଲି ? ଆଚ୍ଛା, ତମେ ତ ଜୀବନରେ ଯାହା ଲେଖିବାର ଲେଖିଛ, ଯାହା ଦେବାର ଦେଇଛ । ମୋର ଋଣ କିନ୍ତୁ ଅଶୁଝା ରହିଛି । ମୁଁ ବି କେବଳ ଲେଖିବି ଏ ଯାତ୍ରା । ଇତି ।

ପ୍ରିୟ

## ଗହନ ମନର ବ୍ୟାକୁଳ ଆକାଙ୍‌କ୍ଷା

ଭଦ୍ରଖ
୧୧ । ୫ । ୧୯୪୯

ପରମ ସ୍ନେହର ଲକ୍ଷ୍ମୀ,

ବହୁ ପଥ ଘୂରି ଏଠି କାଲି ସନ୍ଧ୍ୟାରେ ପହଁଚିଲି । ବାଟରେ ଚିଠି ଦେବା ଦେବା କରି ଦେଇ ପାରିନି ।

୯ ତାରିଖ ସନ୍ଧ୍ୟାରେ ଯାଜପୁର ପହଁଚିବା ପରେ ପରେ ମୋର ମନ କପରି ଶ୍ରାନ୍ତକ୍ଳାନ୍ତ ବୋଧହେଲା । ଭଲ ଲାଗିବା ପାଇଁ ଗାଧୋଇଲି । ଗାଧୋଇ ବସିଛି, ହଠାତ୍ କେମିତି ସମସ୍ତ ଚିତ୍ତକୁ ଅଧିକାର କରି ବସିଲ; ମୁଁ ଅନେକ କ୍ଷଣ ଧରି କାନ୍ଦିଲି; ଜୀବନସାରା ଯେତେ ଯେତେ ଅନ୍ୟାୟ ଅପରାଧ କରିଛି, ସେଇ ସବୁହିଁ ବାରମ୍ବାର ଚିତ୍ତରେ ପୁନରାବୃତ୍ତ ହୋଇ ପ୍ରାଣକୁ ମନ୍ଥନ କରିବାକୁ ଲାଗିଲା ।

ସେହି ରାତିରେ ଶୋଇବା ପୂର୍ବରୁ ଦାନ୍ତ ଘଷୁ ଘଷୁ କୃତ୍ରିମ ଦାନ୍ତଟି ହଠାତ୍ ଛିଟିକି ବାଁ ଆଖିରେ ବାଜିଲା । କିଛି ବେଦନା ହେଲା । କିନ୍ତୁ ଶୋଇ ତ ପଡ଼ିଲି, ରାତିରେ ଆଉ କିଛି ଜାଣିଲି ନାହିଁ । ତହିଁ ଆରଦିନ ସକାଳୁ କିନ୍ତୁ ଅନୁଭବ କଲି ଯେ ଆଖିଟା ବଡ଼ ପରାଣ ହୋଇଛି, ଲାଲ୍ ପଡ଼ିଛି ଓ ପାଣି ଦେଉଛି । ସ୍କୁଲ ଦେଖିସାରି ଡାକ୍ତରଖାନାକୁ ଯାଇ ଗୋଟାଏ କ'ଣ ପାଣି ପକାଇଲି, କିନ୍ତୁ ସେଥିରେ ବିଶେଷ କିଛି ହେଲାନି । ନଂ ୧ ଖାଇଲି, ସେଥିରେ ବରଂ କିଛି ଚେକ୍ ହେଲା । ସେହିପରି ଅବସ୍ଥାରେ ଭଦ୍ରଖ ପହଁଚିଲି । ପହଁଚିବାର ଘଣ୍ଟାକ ପରେ ବାଲେଶ୍ବର ଜିଲ୍ଲାବୋର୍ଡ଼ ଚେଆରମାନ୍ ଆସିଲେ, ବାରଣ୍ଡାରେ ବସି କଥା ହେଉଥିଲୁ, ଅନ୍ଧାର ହୋଇ ଆସିଲାଣି; ମୁଁ କିନ୍ତୁ ମଝିରେ ମଝିରେ ଆଖିକି ଧରି ବସିଥିବାର ଦେଖି ସେ କହିଲେ, "ଆପଣଙ୍କର ଆଖିଟାକ କିଛି ହେଉଛି କି ? ମୁଁ 'ହଁ' କଲି; ସେ କହିଲେ ତାଙ୍କ ପାଖରେ ଔଷଧ ଅଛି । ସଙ୍ଗେ ସଙ୍ଗେ "ଅପ୍‌ଟ୍ରୋକସ୍" ( Optrex ) ବୋଲି ଇଂରାଜି ପେଟେଣ୍ଟ ଔଷଧ ଆଣି କିଛି ମୋ ଆଖିରେ ପକାଇବାର ବନ୍ଦୋବସ୍ତ କଲେ । ତାହା ଏକ ଲୋସନ୍ । ସେଇଥିରୁ ଦୁଇଥର ବ୍ୟବହାର କରିବା ଫଳରେ ମୁଁ ଆଜି ସକାଳୁ ସମ୍ପୂର୍ଣ୍ଣ ବ୍ୟାଧିମୁକ୍ତ ।

ଯାଜପୁରର ବରଜା ହାଇସ୍କୁଲରେ ପ୍ରସିଦ୍ଧ ସଂଗୀତଜ୍ଞ କୃଷ୍ଣପ୍ରସାଦ ବସୁ ଏବେ ଶିକ୍ଷକତା କରନ୍ତି । ତାଙ୍କର ଭାରି ଇଚ୍ଛା ଥିଲା ସେ ମତେ ତାଙ୍କର ଛାତ୍ର ଛାତ୍ରୀଙ୍କ ସହାୟତାରେ ସଙ୍ଗୀତ ଶୁଣେଇବାକୁ । କିନ୍ତୁ ସ୍କୁଲରେ ପରୀକ୍ଷା ଚାଲିଥିବାରୁ, ତାହା ସମ୍ଭବ ହେଲା ନାହିଁ ।

ଆଜି ସ୍କୁଲ ପରିଦର୍ଶନ କରି ଫେରିବା ପଥରେ ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କୁ ଦେଖିବାକୁ ଯାଇଥିଲି । ସେ ଓ ନିତ୍ୟାନନ୍ଦ ଏବଂ ତାଙ୍କର ଅନ୍ୟ ପୁଅ ମଧ୍ୟ ଥିଲେ । ଅନେକ ବେଳ ଯାଏଁ କଥାବାର୍ତ୍ତା ହେଲା । ଜଳଖିଆ ଦେଲେ । ସାମାନ୍ୟ ଗ୍ରହଣ କଲି ମାତ୍ର ।

ବରାବର ମନେ ପଡ଼ୁଛି । ପାରିକୁଦ—କଦଳୀ ରଙ୍ଗମଞ୍ଚରେ କି ପ୍ରକାର ଅଭିନୟ ହୋଇଗଲା, ତା' ଜାଣିବାକୁ ଥରେ ଥରେ କୌତୂହଳ ହୋଇଛି । ତାହା କେବଳ ଚବିଶି ଘଣ୍ଟା ଭିତରେ ଏକ ଏକ ମୁହୂର୍ତ୍ତ ପାଇଁ ମାତ୍ର ।

ଫେରିବାକୁ ଆଉରି ସପ୍ତାହେ ବାକି । ତମକୁ କିନ୍ତୁ ଏହି ମୁହୂର୍ତ୍ତରେ ନିକଟରେ ପାଇବାକୁ ଭାରି ଇଚ୍ଛା ହେଉଛି ।

ପିଲମାନଙ୍କୁ ପ୍ରାଣର ଆଶୀର୍ବାଦ । ମୁଁ ବା କି ଆଶୀର୍ବାଦ ଦେବି ? ସେମାନେ ପ୍ରତ୍ୟେକେ ମୋ ଭାଗ୍ୟରେ ଏକ ଏକ ଜୀବନ୍ତ ଆଶୀର୍ବାଦ ।

ଗହନ ମନର ବ୍ୟାକୁଳ ଆକାଙ୍କ୍ଷା ଗ୍ରହଣ କରିବ ।
ଗଲେ ଦେଖା । ଇତି ।

ପ୍ରିୟ



# ଅହରହ ମନରେ ଅଛ

ସମ୍ବଲ୍‌ପୁର
୧୮ । ୧୧ । ୪୯

ପ୍ରାଣର ଲକ୍ଷ୍ମୀ ରେ,

ତମଠାରୁ ଚଠି ପତ୍ର ନ ପାଇ ମନ ଚଂଚଳ ହୋଇ ରହୁଛ । ନିଜର ଓ ଘରର ଖବର ଶୀଘ୍ର ଲେଖ । ଘର କାମରେ କ'ଣ ଏତେ ବ୍ୟସ୍ତ ଅଛ ?

ହରପ୍ରସାଦ ଦେବ ଓ ମୁଁ କାଲି ଗଡରେ ଡକ୍ଟର ଆଇଜାକ୍ ସାନ୍ତାଙ୍କ ଘରକୁ ଖାଇବାକୁ ଯାଇଥିଲୁ । ଡ: ସାନ୍ତା ବର୍ତ୍ତମାନ ଏକାକୀ । ତାଙ୍କର ଦ୍ବିତୀୟ ପକ୍ଷର ସ୍ତ୍ରୀର ପୂର୍ବସ୍ବାମୀର ପିଲାପିଲି କଲିକତାରେ ଅଛନ୍ତି । ତେଣୁ ସେ ବରାବର କଲିକତା ଧାଉଁଛନ୍ତି । ବସ୍ତୁତ ସାନ୍ତା ପ୍ରାୟ ଇ ଏକାକୀ ଏଠି । କିନ୍ତୁ ପ୍ରକୃତରେ ପ୍ରତିଭାବାନ୍ ଲୋକ । ପ୍ରତ୍ୟେକ କଥାରେ ତାଙ୍କର ନିଜସ୍ବ ଚିନ୍ତା ଫୁଟି ଉଠୁଛି । ପୃଥିବୀର ବହୁଦେଶ ବୁଲିଛନ୍ତି । ଏଠି ଅକର୍ମଣ୍ୟ ଡୁଙ୍ଗୁରୀ ଉପରେ ସେ ଯେମିତି ଘର ଓ ବଗିଚା ବନେଇଛନ୍ତି, ତାହାହିଁ ତାଙ୍କର ଯୋଗ୍ୟତାର ସୂଚକ ଓ ଦେଖିବାର କଥା । କାଲି ସେ ନିଜ ତତ୍ତ୍ବାବଧାନରେ ରନ୍ଧିତ ଯାହା ଖାଇବାକୁ ଦେଲେ ତାହା ଖୁବ୍ ରୁଚିସଂପନ୍ନ ଓ ଭୋଗ୍ୟ ହୋଇଥିଲା ।

ମୁଁ ଆସନ୍ତା ମାସ ୪ ତାରିଖରେ ଏଠୁ କଟକ ଯିବି । ବୋଧହୁଏ ଏକ ସପ୍ତାହ କଟେଇ ପର ରବିବାରରେ ଫେରିବି । ଗୁଇ, ଦୁଇ ଦିନ ତଳେ ଏଠାକୁ ଆସି କହିଗଲା ଯେ ସେ ତା'ପରଦିନ ତା'ର ଜିନିଷ ଇତ୍ୟାଦି ପଠାଇ ଦେଉଛି । କିନ୍ତୁ ଏ ଯାକେ ତା'ର ଦେଖା ନାହିଁ ।

ଏଠି ଶୀତ ଟିକିଏ କମିଛି । କଲେଜରେ ମତେ ପ୍ରାୟ ଇ ଭିନ୍ନ ଭିନ୍ନ ସଭାରେ ବକ୍ତୃତା ଦେବାକୁ ପଡେ, ତା' ଛଡ଼ା ଦ'ଘଣ୍ଟା କ୍ଲାସ ବି ନେଉଛି, ତେଣୁ ଏପର୍ଯ୍ୟନ୍ତ ଅନ୍ତତଃ ବେଶ୍ ବ୍ୟସ୍ତ ରହୁଛି । ନୂତନ କିଛି ଲେଖିନି । ଭୁବ ନାଟକଟି ଗୋଟିଏ ପିଲା ଦେଇ ନକଲ କରାଉଛି । ଆଉ ୮ । ୧୦ ପୃଷ୍ଠା ଅଛି । ସରିଲେ କଟକ ପଠାଇବି ।

ଶ୍ୟାମ ମିଶ୍ରଙ୍କ ନିକଟକୁ ତିନିଶତ ଟଙ୍କା ଧାର କରି ପଠାଇ ଦେଇଛି ।ଏଠାରେ ଇନ୍‌ସିଓର୍ ଲଫାଫା ନ ମିଳିବାରୁ ମନିଅର୍ଡ଼ରରେ ବାଧ୍ୟ ହୋଇ ପଠାଇଲି ।

ଅହରହ ମନରେ ଅଛ । ଆଶାକରେ ତମର ସ୍ବାସ୍ଥ୍ୟ ଭଲ ଥିବ । ଆଗାମୀ ଦେଖାକୁ ଉଦ୍‌ଗ୍ରୀବ ହୋଇ ଅନାଇ ରହୁଛି । ଇତି ।

ପ୍ରିୟ



# ବେଶୀ ମନେ ପଡ଼ିଲ ତମେ

ସମ୍ବଲପୁର
୧୩ । ୬ । ୫୦

ପ୍ରାଣର ଲକ୍ଷ୍ମୀ,
ପରମ ପ୍ରେମର ଗୋ,

ଏଠାରେ ନିରାପଦରେ ପହଞ୍ଚିଛି । କିନ୍ତୁ ମୋର ଆସିବାରେ ଏକ ଅଭାବନୀୟ କାଣ୍ଡ ଘଟି ଯାଇଛି । ଗାଡ଼ିରେ ଭୀଷଣ ଭିଡ଼ । ସେକେଣ୍ଡର ଅତ୍ୟାଚାରରୁ ନିଷ୍କୃତି ପାଇବା ପାଇଁ ମୁଁ କଟକ ଷ୍ଟେସନରେ ଏକ ଫାଷ୍ଟକ୍ଲାସ ଡବାରେ ଚଢ଼ିଲି । ହଲଧରକୁ ନିକଟବର୍ତ୍ତୀ ଏକ ତୃତୀୟ ଶ୍ରେଣୀ ଡବାରେ ବସାଇ ଦେଲି ଓ ମୋ ବସିବା କୋଠରୀ ଦେଖାଇ ଦେଲି । ଗାଡ଼ି ଛାଡ଼ିଲା । ଢେଙ୍କାନାଳ ପର୍ଯ୍ୟନ୍ତ ମୁଁ ଚେତା ଥିଲି । ଇ ଭିତରେ ଜଣେ ଟିଟିଆଇ, ଜଣେ ପୋଲିଶ୍ ଅଫିସର ଓ ଜଣେ ଢେଙ୍କାନାଳର ଗ୍ରାମ୍ୟ କୃଷକ ଯାହାକି କି ମୋ କୋଠରୀର ବାଡ଼କୁ ଧରି ଓହଳିବାର ଦେଖି ମୁଁ କବାଟ ଫିଟାଇ ଭିତରକୁ ଡାକି ଆଣିଥିଲି, ଏ ସମସ୍ତେ ଏକେ ଏକେ ବିଦାୟ ନେଇଗଲେ । ତା'ପରେ ମୁଁ କେତେବେଳେ ଶୋଇପଡ଼ିଛି । ଗାଡ଼ି ମେରାମଣ୍ଡଳି ଛାଡ଼ିବା ପରେ ମୋ ନିଦ ଭାଙ୍ଗିବାରୁ ମୁଁ ଉଠି ଦେଖେ ତ ତାଳଚେର କୋଇଲା ଖଣିର ଉଜ୍ଜ୍ୱଳ ବିଦ୍ୟୁତ୍ ପ୍ରଦୀପରାଜି ଦୂରରେ ଜକ୍ ଜକ୍ କରୁଛି । ଗଭୀର ଅନୁତାପ ଓ ହତାଶା ଭିତରେ ତାଳଚେରରେ ପହଞ୍ଚିଲି । ସେତେ-ବେଳକୁ ରାତି ଗୋଟାଏ । ସେଇ ଟ୍ରେନ୍ ପୁଣି ମେରାମଣ୍ଡଳିକି ଫେରି ଆସିବ, ରାତି ୩ଟାରେ । ମୁଁ ଫାଷ୍ଟକ୍ଲାସରୁ ନେଇ ଆସିଲି ମୋର ଜିନିଷ ଏକ ସେକେଣ୍ଡକ୍ଲାସ ଡବାକୁ ଓ ସେଇଠି ଅର୍ଦ୍ଧଚେତନ ଅବସ୍ଥାରେ ପଡ଼ି ପଡ଼ି ନାନା ଦୁର୍ଭାବନାରେ ସମୟ କଟେଇବାକୁ ଚେଷ୍ଟା କଲି । ହଲଧର ମେରାମଣ୍ଡଳିରେ ଓହ୍ଲାଇ ଯାଇଥାଏ । ତାଳଚେରରେ ଗାଡ଼ି ପହଞ୍ଚିଲା ମାତ୍ରେ ତା' ଡବାକୁ ଯାଇ ତା' ନାଁ ଧରି ଚିତ୍କାର କରିଥିଲି । ସେ ନ ଥିଲା । ତେଣୁ ଜାଣିଲି ସେ ନିଶ୍ଚୟ ମେରାମଣ୍ଡଳିରେ ଓହ୍ଲାଇ ଯାଇଥିବ । ନୂଆ ଲୋକ, କ'ଣ କରୁଥିବ, କିଏ ତାକୁ ହଇରାଣ କରୁଥିବ ଭାବି ଭାବି ମୁଁ ଅସ୍ଥିର ହେଉଥାଏ ବେଳେ ବେଳେ । କିନ୍ତୁ ବେଶୀ ମନେ ପଡ଼ିଲ ତମେ । ସେଠି ଗଭୀର ରାତିରେ ତମେ କରୁଥିବ କ'ଣ, ହୁଏ ତ କାନ୍ଦୁଥିବ, ଜୀବନସାରା ତମକୁ କି କଷ୍ଟ ଦେଇଛି ଏ ସବୁ ଭାବି ଭାବି ମୁଁ ମନେ ମନେ କାନ୍ଦିବାକୁ ଲାଗିଲି ।

କୌଣସିମତେ ୩ ଘଣ୍ଟା ଶେଷ ହେଲା । ଗାଡ଼ି ଛାଡ଼ିଲା । ମୋ ଡବାକୁ ଆସିଲେ ଏକ ସବ୍‌ଇନ୍‌ସ୍ପେକ୍ଟର, ଯେ କି ଟ୍ରାନ୍‌ସଫର୍‌ରେ ଯାଉଥାନ୍ତି ଢେଙ୍କାନାଳ । ତାଙ୍କ ସାମାନ୍‌ରେ ସାରା କମ୍ପାର୍ଟମେଣ୍ଟ ଭରିଗଲାଣି । ମେରାମଣ୍ଡଳୀରେ ପହଞ୍ଚିଲି । ଓହ୍ଲାଇବା ମାତ୍ରେ ଶ୍ରୀମ୍ୟଙ୍କୁ ହଲଧର ଆସି ଦେଖା ଦେଲେ । ମୁଁ ଧରିନେଇଥାଏ ଯେ ବସ୍ ଛାଡ଼ି ଚାଲିସିବଣି । କେବଳ ଆଶା ଥାଏ ପୁରୀ ଯାତ୍ରୀବାସ ସ୍ପେଶାଲ୍ ବସ୍‌ରେ । କିନ୍ତୁ ପ୍ରଥମେ ଜଣା ପଡ଼ିଲା ଯେ ଆଜି ବସ୍ ଫେଲ୍ ନାହିଁ । ପରବର୍ତ୍ତୀ ବସ୍ ଆଗାମୀ କାଲି ଦିନ ଏଗାରଟାରେ । ମୁଁ ଓ୍ୱେଟିଂ ରୁମ୍‌କୁ ରାତି ଓ ଦିନ କଟାଇବାକୁ ଯାଉଛି, ହଠାତ୍ ଜଣେ କହିଲା, ବସ୍ ପାଇଁ ଏଇ ସେଠି ଟିକଟ୍ କଟା ହୁଏ, ସେଇଠି ବୁଝି-ନଅନ୍ତୁ, କେତେବେଳେ ଆଉ ବସ୍ ଯିବ । ଦୌଡ଼ିଲି, ପଶିଲିକ୍ଷଣି, ବସ୍‌ର ଟିକଟ୍ ବିକେତା, କଣ୍ଡାକ୍ଟର୍ ଓ ଡ୍ରାଇଭର୍ ଯୁଗପତ୍ ମସମ୍ମାନରେ ଦଣ୍ଡାୟମାନ ହୋଇ-ପଡ଼ିଲେ । ମୁଁ ପଚାରିଲି "ପରବର୍ତ୍ତୀ ବସ୍ କେତେବେଳେ" ? ଉତ୍ତର "କାଲି ଦିନ ଏଗାରଟାରେ" ମୁଁ ପଚାରିଲି "ଆଉ କୌଣସି ବସ୍ ନାହିଁ, ଯେଉଁଥିରେ ଶୀଘ୍ର ଯାଇପାରିବି" ? "ଆଜ୍ଞା, ଲୋକାଲ୍ ବସ୍ ତ ଏ ଯାଏଁ ଛାଡ଼ିନି, ସେଇଥିରେ ଯାଉ-ନାହାନ୍ତି" ? "ଛାଡ଼ିନି !, କାହିଁକି !" "ଆଜ୍ଞା ସେ ବସ୍ ଆଜି ଲେଟ୍‌ରେ ଏଇକ୍ଷଣି ଆସି ପହଞ୍ଚିଲା" । ମୁଁ ଔତ୍ସୁକ୍ୟ ସହିତ ମୋ ପାଇଁ ଟିକଟ୍ କାଟିବାକୁ କହିଲି । ସେମାନେ ସାଙ୍ଗେ ସାଙ୍ଗେ କାଟିଦେଲେ । ଯେଉଁମାନେ ଆଗରୁ ୩ ଘଣ୍ଟା କାଳ ଅପେକ୍ଷା କରିଥିଲେ, ସେମାନଙ୍କ ସାଥିରେ ସାଙ୍ଗେ ସାଙ୍ଗେ ବସିବାର ବ୍ୟବସ୍ଥା କରି ନେଇ, ଆସି ଏଠି ପହଞ୍ଚିଲି ଦିନ ୧୨ରେ ।

ମୋର ବରାଦ ଅନୁସାରେ ଚମତ୍କାର ଚୂଲି ପରି ହୋଇଛି । ଗୁହାଳ ଓ କାଠର ଘର କରା ହୋଇ ଯାଇଛି—ଯାହା ମୁଁ ବରାଦ୍ ଦେଇଥିଲି ତମର ଆସିବା-ପାଇଁ । ବାରଣ୍ଡାରେ ଜାଫରି ଦେଇ, ମଡ଼ାଇ ଦେଇଛି କୁଞ୍ଜଲତା । ଥୋଇଛି ଆଣି ରଜନୀଗନ୍ଧାର କୁଣ୍ଡ । ଫୁଲ ଫୁଟିଲାଣି, କୁଞ୍ଜଲତା ମାଡ଼ିଲାଣି । ତମେ ଆସିବନି ଥରେ ? ମୋର ଆୟୋଜନକୁ ସାର୍ଥକତା ଦେବାକୁ ଦିନକ ପାଇଁ ହେଲେ ?

ପିଲାମାନେ ଭଲ ଅଛନ୍ତି । ତେବେ ତମଠୁ ଦୂରରେ ବେଶୀ ଦିନ ଏଠି ରଖେଇବା ସମ୍ଭବ ହେବନି ଦେଖୁଛି—ଅନ୍ୟ ଅସୁବିଧା କିଛି ନାହିଁ, କେବଳ ମନସ୍ତତ୍ତ୍ୱ ଦିଗରୁ । ତମେ ଅକ୍ଟୋବରରେ ଆସିଲେ ତମର ସାଥିରେ ଚାଲିଯିବେ ।

ମୋର ସକଳ ପ୍ରୀତି ଗ୍ରହଣ କରିବ । ଇତି ।

ମାୟା ।



# ପ୍ରାଣର ଗଭୀର ପ୍ରଣୟ

ସମ୍ବଲପୁର
୧୩ । ୬ । ୫୧

ଏକ ହୃଦୟର ଧନ
ହେମ,

ତମର ଚିଠି ପାଇଲି । ଏଇ ଦୁଇଲାଇନ୍ ମୋ ପ୍ରତି ଯଥେଷ୍ଟ । ମୁଁ ବେଶୀ ମାଗିନ । ଢେର ପ୍ରେମପତ୍ର ଲେଖିଛ, ପ୍ରାଣର ସମସ୍ତ ସ୍ନେହ ନିଗାଡ଼ି ଦେଇଛ, ତା'ର ବହୁ ଅସମ୍ମାନ କରିଛି । ଆଉ ମାଗି, ଅଧିକ ଅସମ୍ମାନ କରିବିନି । କିନ୍ତୁ ତମର ଏଠି ଚିଠିଟା ଏପରି, 'ଘୃଣାତ୍ମକ' କଅଣ ହେଲି ବୋଲି ଲେଖିଛ । କଥାଟା ସ୍ପଷ୍ଟ କରି କହ । କ'ଣ ସେଠାରେ ଦୁଷ୍ଟ କାର୍ଯ୍ୟର ବାତାବରଣ ! ସେ ସବୁ ଭୁଲିଯାଅ । ଶୀଘ୍ର ଫେରିଆସ ନିଜର ନୀଡ଼କୁ । ସେଠି ରହି କମିତ କାମ କରିବ ମ ! ବର୍ଷା ତ ଆରମ୍ଭ ହେଲା ପ୍ରାୟ, ବର୍ଷାରେ ଘରପଡ଼ିନ ପଡ଼ିବ କମିତ ।

ଆମର ଏଠି ଚଳିବାର ଅସୁବିଧା ବେଶୀ ହେଉନି । କାଶୀ ଆଜି ଚାଲିଗଲା; ସଦାନନ୍ଦ ପାଣି ଦେଲା । କିନ୍ତୁ ମୁଁ ମିଟିଂକୁ ଗଲେ ପିଲାଙ୍କୁ କା'ପାଖରେ ଛାଡ଼ିଯିବି, ସେଇ ହେଉଛି ଚିନ୍ତା । କେତେ ଦିନ ସେଠି ରହିବ ବୋଲି ଭାବୁଛ ?

କାଲି ନନ୍ଦ ଷ୍ଟୁଡେଣ୍ଟସ୍ ଷ୍ଟୋରର ଶ୍ରୀଧର ମହାପାତ୍ର ଆସି କୁଞ୍ଜ ଓ ଜୀବନୀ ଓ ପ୍ରବନ୍ଧ ପାଇଁ କଣ୍ଟ୍ରାକ୍ଟ ନେଇ ଗଲେ । ଉଭୟର ଗ୍ରାମ, ହେମଲତା ଓ ମୋ ପାଇଁ ସେ ଅଲଗା ଅଲଗା କରି ସର୍ତ୍ତର ଫର୍ମ ଷ୍ଟାମ୍ପ କାଗଜରେ କଟକରେ ତିଆରି ରଖିବେ ଓ ସେଇଠି ଦସ୍ତଖତ ହେବ । ସହି ସବୁ ଏଇଠି ଆଲୋଚନା ହୋଇ ଯାଇଛି । ଏଥର କଟକ ଗଲେ ତମର ଗପଗୁଡ଼ିକ ତାଙ୍କୁ ଦେଇ ଆସିବି ଛାପିବା ପାଇଁ ।

ହଁ ନାଗ୍ରଜଜରେ ତମର 'ଅପୂର୍ବ ବୁଢ଼ୀ' ଗପ ପଢ଼ିଲି । ଯେଉଁ ସ୍ମୃତିରେ ଅନ୍ତରର ଗହନ ଦେଶ ଥରଥର ହୋଇ ଉଠୁଛି, ତାକୁ ଏପରି ଜୀଅଁ ଇଲି ପୁଣି କାହିଁକି ।

ହରେଚନ୍ଦନ ଏକ ଦୀର୍ଘପତ୍ର ଦେଇଛି । ଆମର ପାଟ୍କୁଦର ଦୁଇଠାର ଜମି ପାଁଚଶ ଟଙ୍କା ଉପରେ ବିକୁଛି । ମାଲ୍ୟବନ୍ତ ପାଇଁ ଗ୍ରାହକ ଠିକ୍ ହେଇନ, ଚେଷ୍ଟା କରୁଛି, ଟଙ୍କା ହୁଏତ ହଜାରେ ବାରଶ ହେବ । ମୁଁ ତାଙ୍କୁ କହୁଛି ଯେ ବାଲୁଗାଁରେ ଘର ବଟିଗ୍ଲ ହେଲ ପର୍ ଏକଟରେ ଖଣ୍ଡେ ଜମି ଦେଖି ସେଇ ଟଙ୍କାରେ କିଣି ନେବାକୁ । ଆଜ୍ଞ କଣାର ସିବା କଥା, ଧର୍ମା, ଦାଦା ଜମି ଦାବୀ କରିବା କଥା ଲେଖାଥିଲ ତୁ । ଅଚ୍ଛା ଚିଠିଟା ପଠେଇ ଦେଉଛି । ତମେ ମଧ୍ୟ ଉତ୍ତର ଦେଇ ପାର । ମୁଁ ଲେଖିଛି ସେ ଗାଁକୁ ଅସି ଗାଁ ବାଲାଙ୍କୁ, ଭଦ୍ରଲୋକଙ୍କୁ ଡାକନ୍ତୁ । ବଳରାମ ନାୟକଙ୍କର ଦେଣା ଓ ଖର୍ଚ୍ଚ ଇତ୍ୟାଦି ଯାଇ, ଯାହା ବାକି ରହିଲ ନ୍ୟାଯ୍ୟଭାବରେ ଭଦ୍ରଲୋକ ଯେପରି ଯୁକ୍ତିଯୁକ୍ତ ଭାବବେ ସେଇପରି ବାଣ୍ଟି ଦିଅନ୍ତୁ । ଅମର କିଛି ଆପତ୍ତି ନାହିଁ ।

କାଲି ଲଲୁର ପତ୍ର ପାଇଥିବ । ମୁଁ ତ ଯାଇ ପାରୁନି । ସିଏ ଯାଉ ସିଣ୍ଡି-କେଟ୍ ମିଟିଂକୁ, ବୋଧହୁଏ ମାସ ଶେଷ ଆଡ଼କୁ । ପ୍ରସ୍ତୁତ ଥିବ, ନେଇ ଆସିବ । ପ୍ରାଣର ଗଭୀର ପ୍ରଣୟ ନେବ । ହେମ, ହେମ, ହେମ.. ...

.. ...ପ୍ରିୟ, ପ୍ରିୟ, ପ୍ରିୟ ।



# ମୋ ପିଲାଙ୍କୁ ଯେମିତି ମୁଁ ସୁସ୍ଥ ଦେଖେଁ

ପ୍ରାଣର ପ୍ରଶସ୍ତ ପ୍ରଦୀପ

ହେମ ମୋର,

ଖୁବ୍ ରାଗିଛୁ ନା ? ଦେଖା ହେଲେ ଝାଡ଼ି, ବାଡ଼ି, ଗାଳି ଖାଇଲେ ଯାଇ ତମ ମନ ଥଣ୍ଡା ହେବାର ଆଶଂକା ଥିଲେ ମଧ୍ୟ 'ମାୟା' ଯାଉଛୁ 'ମୋହ'ର ଆଲିଙ୍ଗନ ଭିତରକୁ ଅତି କଷ୍ଟରେ ।

କଲେଜ ତ ଛୁଟି, ଯାଇ ଅଗଷ୍ଟ ୬ରେ ଖୋଲିବ । ମୋ' 'ଘର' ତ ଏଇକ୍ଷଣି କଟକରେ । ଆଜି ଯାଇ କାଲି ଫେରି ଆସିବ, ମନର ସେ ବଳକାଇଁ ? 'ଘର' ଅଧା ଯେ ପ୍ରାଣର ଦୁଇଟି ଫୁଲ ଏଠି ଅଛନ୍ତି, ସେମାନଙ୍କୁ ବା କା'ପାଖରେ ଛାଡ଼ି ସେଠି ନିଶ୍ଚିନ୍ତରେ ରହିବ ? ସବୁପ୍ରକାର ଦ୍ୱନ୍ଦ୍ୱରୁ ମୁକ୍ତ ପାଇବା ପାଇଁ ଆମେ ତମର ଛୋଟିଆ ଶିଶୁ ଏକାଠି ଯାଉଛୁ ତମର ନୀଡ଼ର ଆଶ୍ରୟ ନେବା ପାଇଁ । ତମେ ଯେଉଁଠି, ଆମର ଭରସା ସେଇଠି ପରା ! ଆମେ କାଲି ଗୁରୁବାର ରାତି ଗାଡ଼ିରେ, ଶୁକ୍ରବାର ସକାଳେ ପହଁଚିବୁ । ଶନିବାର ଆମର ସିଣ୍ଡିକେଟ୍ ମିଟିଂ । ଭାବୁଛି ସୋମବାର ଦିନ ଫେରିବା ବୋଲି, ତେବେ ସେଠିକି ଗଲେ ତମର ସିଦ୍ଧାନ୍ତହିଁ ଏକାନ୍ତ ପାଳନୀୟ ।

ତମରି ପାଣ୍ଡୁଲିପିରୁ ସବୁଟିକୁ ଉଠାଇ ନେବାକୁ ଲାଗିଲି । ଲାଗିଲି ମଧ୍ୟ ତମେ ୨୮ ତାରିଖ ଆସି ନ ପାରିବାକୁ କହିବାରୁ । ଏଣେ ଦନ୍ତଜନିତ ଯନ୍ତ୍ରଣା, ତେଣେ ଏକ ଆଙ୍ଗୁଠି ପଶିବା କାଟ୍ କାଟ୍ କର୍ତ୍ତିତ, କଲେଜ୍‌ରେ ଷ୍ଟ୍ରାଇକ୍, ପିଲା ଦୁ'ଟା ଏଠି ରହି ଯାଇଥାଏ, ସେଣେ ତମେ ଯାଇଥାଏ, ଏ ସବୁ ମିଶି ମିଶି ମୁଁ ବିରକ୍ତ ହେଲି ।

ଆଶାକରେ ବାବୁଲ୍ ଓ କୁନ ଭଲ ହୋଇଗଲେଣି । କାଲି ରାତି ସ୍ୱପ୍ନ ଦେଖୁଛି ମୋ'ର ଗୋଟିଏ କନ୍ୟା ହୋଇଛି ଓ ମୁଁ ସେଥିପାଇଁ ଖୁସି । ପ୍ରଥମେ ଗୋଟିଏ ଶ୍ୱେତ ମାର୍ବଲ ପ୍ରତିମା ଦେଖିଲି । ଖାଲି ଦିଶୁଛି ଏତେ ଛୋଟ ହେଇଚି । ତମେ କହିଲ, ଲଳିତା ବି ଏଇମିତି ଶ୍ୱେତ ହୋଇ ଜନ୍ମ ହୋଇଥିଲା । ଦ୍ୱିତୀୟ ଦୃଶ୍ୟ

ହେଉଛି ପିଲଟି ଗୋଟିଏ ମେଲା ଘରେ ଶୋଇଛି, ତା' ପାଖରେ କେହି ନାହିଁ, ସେ ମୂନରେ ଆଦ୍ର । ମୁଁ ତାକୁ ଧରି ଆଣି ପୋଛି ପାଛି ଦେଇ ତା'ର ଲଜ୍ଜା ଅଙ୍ଗକୁ ଦୃଷ୍ଟି ଦେଉଛି ପିଲଟି ପୁଅ କି ଝିଅ ବୋଲି । ପିଲଟି ନିଜେ ହସି ହସି କହୁଛି 'ମୁଁ କନ୍ୟା, ମୁଁ ଭାରି ବିସ୍ମିତ ଓ ଆନନ୍ଦିତ ହେଲି । ଅଦ୍ଭୁତ ଏ ସ୍ୱପ୍ନ, ନୁହେଁ ?

ହଉ, ମାନଭଂଜନ ପାଇଁ ଗୋଟିଏ କବିତା ନେଉଛି ଓ ଗୋଟିଏ ରସାଳାପ ଗପର କଂକାଳ ଖାଡ଼ା ରଖିଛି; ଯେତେବେଳେ ପ୍ରଦୀପ ସବୁ ନିଭି ଆସିବ ଓ ରାତ୍ରିର ଅନ୍ଧକାରମୟ ନୀରବତାରେ ଦୁଇଟି ହୃଦୟ ପାଖାପାଖି ହୋଇ ପରସ୍ପରର ବାଣୀ ଶୁଣିବାକୁ ଉଦ୍‌ଗ୍ରୀବ ହେବେ, ସେତେବେଳେ ଯଦି ତମର ଆଗ୍ରହ ଥାଏ, ତେବେ ଶୁଣାଇବି ।

ମୁଁ ଅନ୍ୟ କା'କୁ ହୋଇଥିଲେ ତମର ଅତ୍ୟାଚାର ଏତେ ବରଦାସ୍ତ କରୁ ନ ଥାନ୍ତି । ଗତ ଚିଠିଟି ଲେଖି ସାରିଲା ପରଠାରୁ ତମ ସ୍ମୃତିରେ ଓତଃପ୍ରୋତ ହୋଇ ମତେ ଭୟାନକ ଭାବରେ ଉଚ୍ଛନ୍ନ କରି ଆସିଛି ।

ହଉ ଦେଖା ହେବ । ପିଲଙ୍କୁ ଯେମିତି ମୁଁ ସ୍ୱପ୍ନ ଦେଖେଁ । ନ ହେଲେ ସବୁ ସୁଖ ମାଟି ହେବ । । ଇତି ।

ନିରପରାଧ ପ୍ରିୟ ।



# ଏବେ ମନେ ପଡ଼ୁଛି

ଧୋଇଅ ସାହୁ
୧୫ । ୧୨ । ୫୩

ପ୍ରାଣର ଲକ୍ଷ୍ମୀ ମୋର,

ଏଠାକୁ ଭଲରେ ଭଲରେ ଫେରିଲି । ବାଟରେ ଦୁର୍ଗାମାଧବ ମିଶ୍ର (୧) ସାଥୀ ହେଲେ । ସେ ତମ କଥା ଓ ନାଟ୍ୟଜଗତର ଉନ୍ନତି କଥା କହୁଥିଲେ ।

କିନ୍ତୁ କାଲି ସକାଳୁ ଉଠି ଦେଖେ ଯେ ମତେ ଜର ଜର ଲାଗୁଛି । ଗାଧୋଇଲି ନାହିଁ । ବୋଉ ପଠାଇଥିବା ଖାଦ୍ୟରୁ ଖାଲି ଟିକିଏ ଟିକିଏ ତରକାରୀ ଖାଇଲି ଓ ସ୍ୱଭମତ ହୋମିଓ-ଷ୍ଟେଣ୍ଟିଫିକ୍ ଖାଇବାରେ ଲାଗିଲି ତା' ଫଳରେ ୧୧ଟାରୁ ୫ଟା ଯାଏ ଏକାଡେମିକ୍ କାଉନ୍‌ସିଲରେ ଯୋଗ ଦେଇ ପାରିଲି ଏବଂ ମତେ ଦୁଇ ତିନି ଥର ବକ୍ତୃତା ଦେବାକୁ ମଧ୍ୟ ପଡ଼ିଲା । ରାତିରେ ବି ଟିକିଏ ତରକାରୀ ଖାଇ ନେଇ ୮ଟା ବେଳକୁ ଶୋଇପଡ଼ିଲି, ଗଭୀର ନିଦ୍ରା ଗଲି, ଉଠିଲି ୫ଟା ବେଳକୁ । ଆଜି ଅନେକ ପରିମାଣରେ ସୁସ୍ଥ ଅଛି । ଆଜି ଗାଧୋଇଛି ଓ ଭାତ ବି ଖାଇଲି । ତାର ପରେ ଏଇ ତମ ପାଖକୁ ଲେଖୁଛି । ସ୍କୁଲ ସାରି ହିଁ ମିଟିଂକୁ ଦୌଡ଼ିବି । ଆଜି ବି ମୋର ଏକାଧିକ ଥର କହିବାର ଅଛି ।

ଏବେ ମନେ ପଡ଼ୁଛି ଯେ ଆସିଲା ଦିନ ଏଠି ପହଞ୍ଚିଲା ମାତ୍ରେ ମୋର ଇଚ୍ଛା ହେଲା, ପୁଣି ତମ ନିକଟକୁ ଫେରିଯିବାକୁ । ମନେ ହେଉଛି ତମର ଛାୟା ଯେପରି ସବୁବେଳେ ମୋ ପଛପଟେ ଠିଆ ହୋଇଛି । ମୁଁ ଅପରାଧ କରିଛି ଧନ, କିନ୍ତୁ ମୁଁ ଭାବୁଛି ଯେ ମୋର ଅନୁତପ୍ତ ପ୍ରେମର ପ୍ରଖର ଅଶ୍ରୁଧାରାରେ ତୋ ମନରୁ ସେ ସମସ୍ତର ଚିହ୍ନ ରେଖା ଲିଭାଇ ଦେବ ।

ମି. ଜନ୍ ନିକଟରେ ପ୍ରିନ୍‌ସିପାଲ ହୋଇ ଯାଉଛନ୍ତି । ଆଶ୍ଚର୍ଯ୍ୟର କଥା ଏହା ସମ୍ଭବ ହୋଇଛି କୁଆଡ଼େ ତା ସମ୍ପର୍କରେ ମୁଁ କାରାଗାର—ଶେଲରେ ଲେଖିଥିବା

---

(୧) ଦୁର୍ଗାମାଧବ ମିଶ୍ର, ଆଇ. ଜି. ସାହିତ୍ୟିକ ।

ମୋର୍କସ୍ ଯୋଗୁ । ସେଥିପାଇଁ କେତେକ ଜରୁରୀ ମୋ ଉପରେ କହିଲୁ ବିରକ୍ତ । ମୁଁ କିନ୍ତୁ ଯାହା ଯେତେବେଳେ ଠିକ୍ ଭାବୁଛି ତା' କରୁଛି ମାତ୍ର ।

ମୋର ପ୍ରାଣର ସ୍ନେହ ନେବ । ଟ୍ରୁଣ୍ଡୁ (୨) ମୋର ଗଭୀର ସ୍ନେହ ଦେବ । ଆଉ ସମସ୍ତେ ଭାରି ମନେ ପଡ଼ୁଛନ୍ତି । ମୁଁ ଯେ କଟକକୁ ବଦଳି ଚାହୁଁଛି ତା'ର ମନସ୍ତାତ୍ତ୍ୱିକ ହେତୁ ବୋଧହୁଏ ଏହି ଯେ ମୋର ଆତ୍ମା ଆଉ ମୋର ପରିବାରର ନୀଡ଼ରୁ ସାମୟିକ ପାଇଁ ମଧ୍ୟ ବିଚ୍ଛିନ୍ନ ହେବାକୁ ଚାହେଁନା ।

ମୋର ସ୍ନେହ ନେବ । ସ୍ୱାସ୍ଥ୍ୟ ପ୍ରତି ଯତ୍ନ ନେବ । ଠିକ୍ ବେଳରେ ଗାଧୋଇବ । ସକାଳେ ନିଶ୍ଚୟ କିଛି ଖାଇବ ।

ମୋର ଗଭୀରତମ ସ୍ନେହ ନେବ ।

ଇତି,

ପ୍ରିୟ ।

---

(୨) ଟ୍ରୁଣ୍ଡ ( ସାନଝିଅ ) ।

କବି ଏ ଚିଠିଟି ଥୋରିଆ ସାହି, କଟକ, ନିଜ ଘରୁ ଲେଖିଥିଲେ ।



# ମହାବୋଧି ସୋସାଇଟି

କୋଟା ହାଉସ୍, ନୂଆଦିଲ୍ଲୀ
୧୧ । ୩ । ୧୯୫୪

ଖୁବ୍ ସୁବିଧାରେ ଓ ନିର୍ବିଘ୍ନରେ ଏଠି ପହଞ୍ଚିଲି ଆଜି ସକାଳେ । ଷ୍ଟେସନରେ ଓହ୍ଲାଇ ସଙ୍ଗେ ସଙ୍ଗେ ଫେରନ୍ତା ଯାତ୍ରା ପାଇଁ ବର୍ଥ ରିଜର୍ଭ କରାଇ ନେଇଛି । ମୁଁ ଏଠାରୁ ୧୩ ତାରିଖ ରାତି ୯ଟାରେ ଡେଲି ଏକ୍ସ୍‌ପ୍ରେସରେ ଫେରିବି, କଲିକତାରେ ପହଞ୍ଚିବି ୧୫ ତାରିଖ ସକାଳେ । ସେଇଦିନ ରାତି ବମ୍ବେ ମେଲରେ ସମ୍ବଲପୁର ଯିବି, ପହଞ୍ଚିବି ୧୬ ତାରିଖ ସକାଳେ—ଯଦି ଗାଡ଼ି ଠିକ୍ ସମୟରେ ଯାଏ । ଆସିଲା ବାଟରେ ଦକ୍ଷିଣେଶ୍ୱର ଓ ବେଲୁଡ଼ ମଠ ଦେଖି ଆସିବି । ମହାବୋଧି ସୋସାଇଟି ଯାଇଥିଲି ! ଯେଉଁ ସନ୍ନ୍ୟାସୀ ଆମ ଘରକୁ ଯାଇଥିଲେ ସେହି ପୁରୁଣା ବନ୍ଧୁ ଥିଲେ । ବାଳସିଂହା ଓ କାଳିଦାସ ନାଗ ଜାପାନ ଚାଲି ଯାଇଛନ୍ତି । ଥେର ଜିନରତନ ନିମନ୍ତ୍ରଣ କରିଛନ୍ତି ଯେ ଗଲାବେଳେ ସୋସାଇଟିରେ ରହିଯିବ । ଏହି ସ୍ଥାନ ଗୋଟିଏ ସରକାରୀ ହୋଟେଲ—ରାଜା ଓ ବଡ଼ ବଡ଼ ଅଫିସର ରହୁଛନ୍ତି ଏଠି । ଦୈନିକ ଖର୍ଚ୍ଚ ୧୧ ଟଙ୍କା । ଓଡ଼ିଆଙ୍କ ଭିତରେ ଆଜି ସକାଳେ କେବଳ ଶ୍ରୀ ଶାରଙ୍ଗଧର ଦାସଙ୍କ ସଙ୍ଗେ ଫୋନ୍‌ରେ କଥା ହୋଇଥିଲି । ସେ ଆଶା ଦେଇଛନ୍ତି ଯେ କାଲି ପାର୍ଲିଆମେଣ୍ଟରେ ଦେଖା ହେବ ଓ ସେଠି ଏକାଠି ଲଞ୍ଚ କରିବା । ଇତି ।



## ମୋ ଲାଲୁ ପାଇଁ ରେ

ପ୍ରାଣର ଲକ୍ଷ୍ମୀ ମୋର,
ପ୍ରାଣର ହେମ,

ଠାଏ ମାତା, ଠାଏ ପୁତ୍ର, ଠାଏ ମୁଁ ବିରହୀ
ଗଣ୍ଡ ଦେଇ ତପ୍ତ ଅଶ୍ରୁ ଧାର ଯାଏ ବହି ।
କାହିଁକି ଆଇଲି ଗୁଞ୍ଜୁ ମାଆକୁ ଏ କାଳେ
କିଏ ପୋଛି ଦେବ ତା' କରୁଣ ଅଶ୍ରୁ ଧାରେ ।
ପ୍ରାଣପ୍ରିୟ ଶିଶୁ ସାଥେ ନ ଗଲି ବା କିଆଁ
ଗଳି ଗଳି ମନ୍ଦ ଢୋଇଯାଏ ମୋର ହିୟା ।
ଯାଇ ବା କି କରିଥାନ୍ତି ବୋଲି ଭାବେ ପୁଣି
ହୃଦର ନିସ୍ୱନ ପ୍ରଶ୍ନ ଉଠେ ପୁଣି ପୁଣି ।
ସେହି ଅଶ୍ରୁ ଢାଳି ମହାପିତାଙ୍କ ଚରଣେ
ଅନ୍ତର ବ୍ୟାକୁଳେ ଡାକେ ରଖ ସଯତନେ
ହେ ମାତା, ହେ ପିତା, ବନ୍ଧୁ, ମୋ ପ୍ରିୟଜନ ରେ
ଆଶ୍ରୟ ମୋ କାହିଁ, ତବ ବିନା ଜଗତରେ ?
ଅପଦାର୍ଥ, ମୂଢ଼, ମୂର୍ଖ, ପାଷଣ୍ଡ, ପାତକୀ
ନିଜ ସ୍ୱାର୍ଥେ ସମସ୍ତଙ୍କୁ ଖାଇଅଛି ଠକି,
କିଛି ମୁଁ ତ ତାଙ୍କୁ ଦେଇ ପାରିନି ଜୀବନେ
ଏତେ ବାନ୍ଧି ରଖିଛନ୍ତି ଯେ ସ୍ନେହ ବନ୍ଧନେ ।
ଅନୁତପ୍ତ, ଉଦ୍‌ବେଳିତ, ଦୁଃଖ ନିପୀଡ଼ିତ
ଆଜି କରେ କଳଙ୍କିତ ପ୍ରାଣ ସମର୍ପିତ ।
ହେ ମହାଜନନି, ଏହି ଅନୁତପ୍ତ ବାର
ରଖ ମୋର ପ୍ରେମାଷ୍ପଦେ ଦୁଃଖରୁ ନିବାରି ।
କ୍ଷମ ମାତ ଅତୀତର ଉନ୍ମାର୍ଗ ଗମନ
ଆଜି ପ୍ରାଣ କରିଉଠେ ବିକଳ କ୍ରନ୍ଦନ

ହେବାକୁ ତାଙ୍କର ଲଖି, ଶୁଣୁଛ ବିମଳ
ତେଣୁ ବହେ ଖ୍ରସିଯାଏ ଚକ୍ଷୁ ଅଶ୍ରୁ ଜଳ ।
ତାଙ୍କର ଯା ଅଛୁ କଛୁ ଅବସ୍ଥ ଅନସ୍ଥ
ହେ ଜନନ, ମୋ ପୃଷ୍ଠରେ ହେଉ ତାହା ପିଷ୍ଟ ।
ହସି ହସି ତାଙ୍କ ଦୁଃଖ ବହନଏ କାନ୍ଧେ
ପାପ ତାପ କଛୁ ତାଙ୍କୁ ଯେପରି ନ ବାଧେ ।
ତଥ୍ ଏବେ ଅସ୍ଥିର ଗୋ, ମୋ ଲଲୁ ପାଇଁ ରେ
ଭାବୁଛୁ ରେଲରେ ଯିବ, ଦେଖି ହଜଲ୍ଲରେ ।
ପୁଣି ଭାବେ ଏ ଅତ୍ୟନ୍ତ ଭାବପ୍ରବଣତା
ତା' ଆଖିରେ ହୋଇପାରେ ଅସୁନ୍ଦର କଥା ।
ବାପା ପର ହେଲେ ଖାଲ ଅଶ୍ରୁ-ପରାୟଣ
ବାପା ପର ସ୍ଖଳନାନ୍ତ ହେବ ତା ଜୀବନ ।
ଠିକ୍ କଛୁ କରିନାହିଁ ପାରେ ଏଇକ୍ଷଣି
ସମସ୍ତ ବ୍ୟକଳ ମାଆ ପୃଥରେ ସ୍ମରଣୀ ।
ପୃଥର ବିରହେ ଆଜ ତା ସତୀ ଜନନୀ
ଅଧିକେ ବାପାର ପ୍ରାଣେ ପଣେ ସୁଲକ୍ଷଣୀ ।

ପ୍ରିୟ

ଯୋରଅ ସାହି
ସକାଳ ୮ଟା
୧୫ । ୭ । ୫୪



# ତମ ଲାଗି କରୁଣ ଅଶ୍ରୁ

ହେମାଳୟ
ଯୋଗିଆ ସାହି, କଟକ
୧୩ । ୧୨ । ୫୪

ପ୍ରାଣର ଲକ୍ଷ୍ମୀ ମୋର,
ହେମ,

ଏଠି ସକାଳେ ପହଞ୍ଚିଲି । ବସ୍ ଓ ଟ୍ରେନରେ ସାଥିର ଅଭାବ ନ ଥିଲେ । ଜଗନ୍ନାଥ ମେଢ଼ା ଥୋଇବାରେ ପଣ୍ଡିତେ (୧) ଓ ତାଙ୍କର ଚେଲା ପୁରାପୁରି ସାହାଯ୍ୟ କରିଥିଲେ । ସେ ବି କଟକରେ ଓହ୍ଲାଇଲେ । ମୁଁ ତାଙ୍କୁ ଆମ ଘରେ ରହିବା ପାଇଁ ଡାକିଲି । ସେ ଆସୁଥିଲେ; କିନ୍ତୁ ରେଭେନ୍ସା କଲେଜଠି ଘନଶ୍ୟାମ ଦାଶଙ୍କ ଘରେ ରହିବେ ବୋଲି ଠିକ୍ କରି ସେଇଠୁ ଚାଲିଗଲେ ।

ଆଶ୍ଚର୍ଯ୍ୟର କଥା, ଏଥର ଆମ ଘରେ ପହଞ୍ଚିଲା ମାତ୍ରେ ତମେ ଓ ଲାଲୁ ମୋର ଚିତ୍ତକୁ ଏପରି ଆକ୍ରାନ୍ତ କଲ ଯେ, ମୁଁ ବ୍ୟସ୍ତ ହୋଇ ନିଜେ ନିଜେ ପଚାରି ହେଲି 'କାହିଁକି ଆଇଲି' ? ମନେ ହେଲା ଯେପରି ଲାଲୁର ହୁଏତ କ'ଣ କିଛି ଘଟିଲା । ମନ ବିଷାଦରେ ଗମ୍ଭୀର ହୋଇ ଉଠିଲା କୌଣସି କାମକୁ ଦେହରେ ଯେପରି ଆଉ ଉତ୍ସାହ ନାହିଁ । ମନ ହେଲା କିପରି ହଠାତ୍ ଫେରି ଯାଆନ୍ତି କି । ଘର ଦ୍ୱାର ସଫା କରାଇ ଟିକେ ଆସ୍ଥାନ ପକାଇବାର ଚେଷ୍ଟା କଲି । କିନ୍ତୁ ମନ କେଉଁଥିରେ ବୁଡ଼ୁ ନ ଥାଏ । ବ୍ୟାୟାମ ଓ ସ୍ନାନ ବେଳେ ବାହୁଦନ ପରେ ନୟନରୁ ତମ ଲାଗି କରୁଣ ଅଶ୍ରୁ ପ୍ରବାହିତ ହେବାକୁ ଲାଗିଲା । ତଥାପି ଚିତ୍ତର ବିଷଣ୍ଣତା କଟିନାହିଁ । ମନଟା ଗୋଳେଇ ଘାଣ୍ଟି ହେଉଛି । ତମର ସ୍ନିଗ୍ଧ ହୃଦୟର ଅନ୍ତସ୍ଥଳକୁ ଗଭୀର ଭାବରେ ଆଲୋଡ଼ିତ କରୁଛି । ରହିକି ରହି କୋହ ଓ ଦୀର୍ଘଶ୍ୱାସ ଆସୁଛି । ଏଇ ଚିଠିଟି ଲେଖିଲେ ଆତ୍ମା ଶାନ୍ତ ହୋଇଯାଇ ପାରେ ଏଇ ଆଶାରେ ଏଇ ଚିଠିଟି ଲେଖି ବସିଛି । ଏ ସବୁକୁ ଛଳନା ବୋଲି ଧରିବନି, ହେମ । ମୁଁ ପ୍ରାଣର ଅସମ୍ଭାଳ

(୧) ପଣ୍ଡିତେ—ସଦାଶିବ ରଥଶର୍ମା, ସେମାନେ ସମ୍ବଲପୁରରେ ମାନସିଂହଙ୍କର ଅତିଥି ହୋଇଥିଲେ । ଏକାଠି କଟକ ଆସିଥିଲେ ।

ଆବେଗରେ ଏ ପତ୍ର ଲେଖୁଛୁ ଓ ମନର କଥାଗୁଡ଼ିକ କହି ଯାଉଛୁ । ତୋଠୁ ଆଉ କ'ଣ ଅଧିକା ପାଇବି ଯେ ତତେ ଛଳନା କରିବି, ଧନ ? ତୋର ସବୁ ଲୁଣ୍ଠନ କରି ନେଇଛୁ, ତତେ ସର୍ବସ୍ୱାନ୍ତ କରିଛୁ । କୌଣସି ଦିନ ସେ ଦାନ, ସେ ତ୍ୟାଗର ମହିମା ଜୀବନରେ ପୂର୍ଣ୍ଣ ରୂପେ ଉପଲବ୍ଧି କରିନାହିଁ, ବରଂ ଅଭିରି କରିଛୁ ଦାବି, ଅଭିଯ କରିଛୁ ଅତ୍ୟାଗ୍ରହ । ତେଣୁ ଛଳନାର ପ୍ରଶ୍ନ ଏଠି ଆଜି ନାହିଁ । ଏ ଚିତ୍ତ-ଆଲୋଡ଼ନ ଅକୃତଜ୍ଞ ଲୋକର ଅନ୍ତର୍ନିହିତ ଅନୁତାପ ଛଡ଼ା ବୋଧହୁଏ ଆଉ କିଛି ନୁହେଁ । ମନ ଏତେ ବ୍ୟସ୍ତ ଲାଗୁଛି ଯେ ଭାବୁଛି ମିଟିଂ ସବୁ ଶେଷ ହେବାପୂର୍ବରୁ ପଳେଇବି । ତମର ଯଦି କିଛି ଘଟିଥାଏ, ତେବେ ଶୀଘ୍ର ଟ୍ରଙ୍କକଲ୍ ଦେବ ବା ଟେଲିଗ୍ରାମ୍ କରିବ ।

ତମକୁ କହିବାକୁ ଭୁଲି ଯାଇଛି ଯେ, ସୁପରିଣ୍ଟେଣ୍ଡିଂ ଇଞ୍ଜିନିୟର ବର୍ମାଙ୍କୁ ମାମୁଁଙ୍କ କଥା କହିଥିଲି, କାଲି ଫୋନ୍‌ରେ । ସେ ମତେ କହିଥିଲେ ସେ ଲୋକକୁ (ଅର୍ଥାତ୍ ମାମୁଁ) ତାଙ୍କୁ (ବର୍ମାଙ୍କୁ) ଯଥାଶୀଘ୍ର ଦେଖା କରିବା ପାଇଁ କହିବାକୁ । ଆସିବାର ତରତରରେ ସେ କଥା ତମକୁ କହିବାକୁ ଭୁଲିଗଲି । ମାମୁଁଙ୍କ ନିକଟକୁ ଶୀଘ୍ର ଖବର ଦେବାର ବ୍ୟବସ୍ଥା କରିବ ।

ଲିଲୁ ବଡ଼ ମନେ ପଡ଼ୁଛି ହଟାତ୍ । ସେ ଯଦି ଆସି ଯାଇଥାନ୍ତା, ମୁଁ କି ଖୁସି ନ ହୋଇଥାନ୍ତି ଏଠି । ସେ ଆସିବାର ଥିଲେ, ହୁଏତ ମୋର ଚିତ୍ତ ଅକାରଣ ଏପରି ଦୁଃଖାଭିଭୂତ ହେଉ ନ ଥାନ୍ତା । ତାର ଆସିବାର ଆଶା ମୋ ଚିତ୍ତର ସମସ୍ତ ଗ୍ଲାନି, ସମସ୍ତ ଅନ୍ଧକାରକୁ ଦୂରେଇ ରଖିଥାନ୍ତା ହୁଏତ । ଜନନୀ ହୃଦୟର ପରମ ପ୍ରାର୍ଥନା ଓ ଆଶୀର୍ବାଦ ମୋ ପିଲା ପାଇଁ ଦୂରରୁ ପଠାଅ । ମୋ ପିଲା କିପରି ଭଲରେ ଥାଉ । ତା'ଠାରୁ ବଡ଼ ଧନ ଆମର ନାହିଁ ।

ମା ପୁଅଙ୍କ ପାଇଁ ପୁଣି ନେତ୍ର ଅଶ୍ରୁସିକ୍ତ ହୋଇ ଆସୁଛି । ସଦାସ୍ୱ ଲକ୍ଷ୍ମୀ, ସଦାସ୍ୱ ମୋ ପ୍ରାଣର ହେମ । ମୋର ଗଭୀର ଆଶ୍ଳେଷ ନେବ । ଇତି ।

ପ୍ରିୟ ।



## ଜନ୍ମଜନ୍ମାନ୍ତରରେ ତୁମର ଆଶ୍ରୟ

ବରହମ୍ପୁର
୨୦ । ୭ । ୧୯୬୫

ପ୍ରାଣର ହେମ,

ବହୁ କାଳ ପରେ ତମୁକୁ ଚିଠି ଲେଖୁଛି । ସେଥିପାଇଁ ବର୍ତ୍ତମାନର ପ୍ରବାସ ଓ ତଜ୍ଜନିତ ବିରହାନୁଭବକୁ ଅନ୍ତରର ଧନ୍ୟବାଦ ଦେଉଛି । ପ୍ରାତ୍ୟହିକ ଦର୍ଶନ ଓ ସହବାସ, ପ୍ରାଣରୁ ଆକର୍ଷଣର ତୀବ୍ରତା କାଢ଼ିନିଏ । କିନ୍ତୁ କୌଣସି ଲୋକ ପ୍ରତି ପ୍ରାଣରେ ଅନ୍ତର୍ନିହିତ ଭାବରେ ପ୍ରବଳ ଆକର୍ଷଣ ନ ଥିଲେ, କେବଳ ପ୍ରବାସ ସେପରି ଆକର୍ଷଣ ଫେରାଇ ଆଣି ପାରେନା । ଅଠର ବର୍ଷର ସାଥିର ମଧୁର ଆଳାପ ଓ ହୃଦୟ-ବିନିମୟ ଭୁଲି ହେବନି ବୋଧହୁଏ । ସମସ୍ତଙ୍କ ସମଗ୍ର ଅନ୍ତରକୁ ଅଭିଭୂତ ଓ ଆଚ୍ଛନ୍ନ କରି ରଖିଛି ଏପର୍ଯ୍ୟନ୍ତ । କିନ୍ତୁ ତମ କଥା ଭାବିଲେ ଭି ମୁଁ ଗଭୀର ଅନୁତପ୍ତ ହୁଏ, ହେମ; ତମେ କାହିଁକି ମନେକର ଯେ ତମ ପ୍ରତି ଯେଉଁ ଅନ୍ୟାୟ-ଅନାଦର-ଅବହେଳା ସବୁ କରି ଆସିଛି, ସେ ସବୁ ପ୍ରତି ମୁଁ ଏକାବେଳକେ ଅଚେତନ ? ତା' ତ ନୁହେଁ; ବରଂ ଅନ୍ତରେ ଅନ୍ତରେ ମୁଁ ସେ ପ୍ରତି ତୀବ୍ରଭାବରେ ସ୍ପର୍ଶଶୀଳ । ତମେ କ'ଣ ବିଶ୍ୱାସ କରିବ ଯେ, ତମୁକୁ ସ୍ମରଣ କରି କରି ଏବେ ବି ମୋ ଆଖିରେ ଅଶ୍ରୁପାତ କରେ ? ଜୀବନର ଚତୁର୍ଥ ପାଦରେ ଆମେ ବର୍ତ୍ତମାନ । ନାଟ୍ୟାଭିନୟମୟ ଗତ ଜୀବନ ଯେ ତମ-ଓ-ମୋ-ପ୍ରତି ଏକାନ୍ତ ଅର୍ଥହୀନ, ତା' ତ କହି ହେବନି । ଏହି ଧରାରେ ଏକ ସମ୍ବତ୍ସରରେ ସୁଖଦାୟୀ, ସନ୍ତୋଷପ୍ରଦ ଦିନ ଓ ରାତି କେତୋଟି ? ଦୁର୍ଦ୍ଦିନର ପ୍ରାଚୁର୍ଯ୍ୟ ଭିତରେ ଆମେ କିନ୍ତୁ ମୁଷ୍ଟିମେୟ ଉତ୍ତମ ଦିନ କେତୋଟିକୁ ଅପେକ୍ଷା କରି ରହୁ, ସ୍ମରଣ କରୁ ଓ ସେହି କେତୋଟିର କରୁଣା ଯୋଗୁ ସମଗ୍ର ସମ୍ବତ୍ସରର କୃପଣତା ଓ ନିଷ୍ଠୁରତା ଭୁଲି ଭି ଯାଉ । ବର୍ଷର ୩୬୫ ଦିନ ଓ ରାତି କୌଣସି ହେଲେ ପ୍ରଣୟୀ ପକ୍ଷରେ ତା'ର ପ୍ରଣୟିନୀ ପ୍ରତି କେବଳ ଉତ୍ସାହ ବର୍ଷଣ କରି ଚାଲିବା ସମ୍ଭବ ନୁହେଁ, ବିଶେଷତଃ ଏହି ଆମର ଜଂଜାଳମୟ ସଂସାରର କର୍କଶ ପରିବେଶରେ । ସେହି ପରିବେଶ ଓ ବାୟୁମଣ୍ଡଳରେ ତମ ପ୍ରତି ବେଳେ ବେଳେ ନିଷ୍ଠୁର କଥା କହିଛି ଓ ନିଷ୍ଠୁର ଆଚରଣ କରିଛି । ପ୍ରାଣର ପରମ ସମ୍ପଦ ମୋର, ଏ ଜୀବନର ଏକମାତ୍ର ବନ୍ଧୁ ଓ ନିସ୍ୱାମକ ମୋର, ବହୁ କ୍ଷମା ଦେଇଛ, ବହୁ

ସହୁଛ; ଜୀବନର ଏହି ଶେଷ କେତୋଟି ମୁହୂର୍ତ୍ତରେ ସବୁ କ୍ଷମା ଦେଇ, ସବୁ ଭୁଲି, ଗ୍ରହଣ କର ଧନ, ଯାର ସ୍ନେହ ପାଇଁ—ଚିର-ବ୍ୟାକୁଳ-ରହି ଆସିଛୁ ତମର-ଆତ୍ମା, ତା'ର ଅଭ୍ରୂଂସ୍ପ ଅନୁତପ୍ତ କେତୋଟି ଅଶ୍ରୁ ବିନ୍ଦୁ ତମର କପୋଳ ଦେଶରେ ଯାହା ଧୀରେ ଧୀରେ ଖୋଜି ବୁଲିଛୁ ଓ ମାଗି ବୁଲିଛୁ ଜନ୍ମଜନ୍ମାନ୍ତରରେ ତମର ଆଶ୍ରୟ, ତମର ନିମନ୍ତ୍ରଣ ଓ ତମର ଭର୍ତ୍ସନା।

ତମ ନାଁରେ ଆଜି ବା କାଲି ଏକଶ ଟଙ୍କା ପଠାଇବି। ତମେ କୃଷ୍ଣଙ୍କୁ ଦଶଟି ଟଙ୍କା ଓ ବାବୁଲିକୁ ଦଶ ଟଙ୍କା ଦେବ। ସେମାନେ ପ୍ରତି କଥା ପାଇଁ ତମକୁ ପଇସା ମାଗିବା ଆଉ ସୁବିଧାର କଥା ନୁହେଁ। ସେମାନେ ବଡ଼ ହେଲେଣି। ସ୍ୱାଧୀନତା ଖୋଜିବା ସ୍ୱାଭାବିକ। ସେ ସ୍ୱାଧୀନତାକୁ ଆମେ ସମ୍ମାନ ଦେବା ଓ ତା' ଦେଇ ସେମାନଙ୍କୁ ଦାୟିତ୍ୱ ଶିଖାଇବା। ଇତି।

ପ୍ରେମଭିକ୍ଷୁ

ମାୟା



# ଏକ ମାନସିକ ଭୂକଂପ

ଖଲ୍ଲିକୋଟ କଲେଜ
ବରହମ୍ପୁର
୮ । ୬ । ୭୫

ପ୍ରାଣର ହେମ,

ଏଠାରେ ବଙ୍ଗଳା ବହି ନାହିଁ କହିଲେ ଚଳେ । ତେଣୁ ଖଣ୍ଡିଏ ବଙ୍ଗଳା ଓ ଝାଡଖଣ୍ଡ ହିନ୍ଦୀ ଉପନ୍ୟାସ ପଠାଇଲି । ଯତ୍ନରେ ରଖିବ । ଲାଇବ୍ରେରୀକୁ ଫେରାଇବାକୁ ହେବ, ନଚେତ୍ ଗଲାବେଳେ ମତେ ଦାମ୍ ଦେବାକୁ ହେବ । ମୁଁ ଦସ୍ତଖତ କରି ଆଣିଛି ।

ଘରେ ରାନ୍ଧିବା ବ୍ୟବସ୍ଥା ଫଳରେ ମୋର ପେଟର ଗୋଳମାଳ ନାହିଁ । ତେଲର ଶୁଦ୍ଧତା ବାଛି ବାହାର କରିବା ଅସମ୍ଭବ ଜାଣି; ମୁଁ ଆଗ୍ ମାର୍କ ଘିଅ ହିଁ ବ୍ୟବହାର କରିବା ସ୍ଥିର କଲି । ସେ ଲୋକଟି ଏକ୍ସପର୍ଟ ନ ହେଲେ ମଧ୍ୟ ରୋଷେଇରେ ନିମ୍ନ ପ୍ରାଇମେରୀ ଅନ୍ତତଃ ପାଶ୍ କରିଛି ବୋଲି ଧରାଯାଇପାରେ । ତେଣୁ ଚଳି ଯାଉଛି । ପଛପଟେ ଯେଉଁ ପ୍ରଫେସର୍ ଅଛନ୍ତି ସେ ଆଉ ରବିବାର ବୁଲିଯିବେ । ତା ହେଲେ ସେ ଏଠି ସପରିବାର ମଧ୍ୟ ରହିପାରେ । ଏବେ କେବଳ ରୋଷେଇ କରିବାକୁ ଆସୁଛି ।

ଏ ପର୍ଯ୍ୟନ୍ତ ସକାଳ ବ୍ରେକ୍‌ଫାଷ୍ଟ ପାଇଁ ଅଣ୍ଡା ଓ କଫି ବାହାରୁ ଆଣୁଥିଲି । କାଲିଠୁ ଘରେ କରିବାର ବ୍ୟବସ୍ଥା କରିଦେଲି । ଖର୍ଚ୍ଚ ବହୁତ କମିବ । ଦୁଧ ଯାଚୁଛନ୍ତି—କିନ୍ତୁ ସେ ଜଞ୍ଜାଳକୁ ନ ଯାଇ, ମୁଁ Milk powderରେ ହିଁ, ତମେ ଆସିବା ପର୍ଯ୍ୟନ୍ତ କାମ ଚଳାଇବି ।

ଜୀବନରେ ବହୁ ଅର୍ଥ ଲୋକସାନ୍ ହୋଇଛି । ତମେ ଗାଳି ଦେଇଛ । ତଥାପି ମୁଁ ଖାତିର୍ କରିନି । କିନ୍ତୁ ଏଇ ବଦ୍‌ବ୍ୟାସ୍ତ ସାଥିକ ବନ୍ଧୁଜନ ବା ସ୍ୱଜନ ବୋଲି ବିଶ୍ୱାସ କରୁଥିବା ଲୋକଙ୍କଠୁ ଅପ୍ରତ୍ୟାଶିତ ଅସୌଜନ୍ୟ ଓ

ଅଶିଷ୍ଟାଗୃହ ପାଇ, ଏପରି ମାନସିକ ବାଧା ପାଇଛୁ ଯେ, ଠିକ୍ ଉଷୀ ଗ୍ଭଲଗଲା ପରେ ମନ ଯେପରି ବହୁକାଳ ଧରି ଗୋଳେଇ ଘାଣ୍ଟି ହୋଇଥିଲା, ସେହିପରି ହୋଇ ଗ୍ଭଲିଛି । ଏ ଏକ ମାନସିକ ଭୂକମ୍ପ, ମୋ ପ୍ରତି ଯାହା ଫଳରେ ମୋର ପୂର୍ବ-ଗଢ଼ା ସମସ୍ତ ସୌଧ ଓ କୁଟୀରଗୁଡ଼ିକ ଧୂଳିସାତ୍ ହୋଇ ଯାଇଛି ଯେପରି । ମୁଁ ବଞ୍ଚିଛି ଓ ସ୍ଥିର ଚିତ୍ତରେ କାମ କରି ଗ୍ଭଲିଛି, କେମ । ସେହି ବିସ୍ତୀର୍ଣ୍ଣ ଧ୍ୱଂସ-ସ୍ତୂପଗୁଡ଼ିକ ମଧ୍ୟରେ ମୁଁ କେବଳ ଜଣକୁ ମୋ ପାଖରେ ଠିଆ ହେବାର ଦେଖୁଛି ବୋଲି । ଗୋଟିଏ ବାଲିକାର ମୂଲ୍ୟ ଓ ମହିମା ଜାଣିବା ପାଇଁ ଗୋଟାଏ ପୂରା ଜୀବନ ଦରକାର ପଡ଼ିଲା ! ସମସ୍ତ ଜୀବନ ବ୍ୟାପୀ ଅହମିକା, ଅବଜ୍ଞା ଓ ଅସ୍ନେହ ଧୀରେ ମନ୍ଥରେ ଗଢ଼ି କରି ଆସିଲା, ଶେଷରେ ଜୀବନର ଶେଷ ପାଦରେ ଏହି ମରୁଭୂମିରେ ଲୀନ ହେବାକୁ ଓ ଦେଖେଇ ଦେବାକୁ ଯେ କୂଳରେ ନୀରବ ବିଶ୍ୱାସ ଧରି ଠିଆ ହୋଇଥିବା ଶ୍ରେଷ୍ଠ ପାଦଟିର ଛାୟା ଓ ଫୁଲ ଫଳହିଁ ମୋର ଶ୍ରେଷ୍ଠ ବନ୍ଧୁ, ଶ୍ରେଷ୍ଠ ଆଶ୍ରୟ ଓ ଶ୍ରେଷ୍ଠ ବିଳାସ ।

× × × କିଛି ପ୍ରତି ମୋର ଆଉ ଉତ୍ସାହ ନାହିଁ । କେବଳ ଜଣକର ସାହାଯ୍ୟ ହିଁ ପ୍ରାଣ ଖୋଜୁଁଛି । ଇତି ।

ମାୟା



# ବିଧାତାର ପରମତମ ଆଶୀର୍ବାଦ

ବରହ୍ମପୁର (ଗଞ୍ଜାମ)
୨୨।୮।୧୯୭୫

ପ୍ରାଣର ପ୍ରେମ,

ତୁମର ଚିଠି ପାଇଲି । ତମେ ଏ ବୟସରେ ମୋ ଚିଠି ପାଇଁ ବ୍ୟସ୍ତ ହେଉଛ, ଏହା କ'ଣ ତମେ ଅନ୍ୟ ଆଗରେ ସ୍ୱୀକାର କରିବ ? କିନ୍ତୁ ତାହା ମୋ ପରି ଲୋକ ପ୍ରତି ବିଧାତାର ପରମତମ ଆଶୀର୍ବାଦ ନିଶ୍ଚୟ । ତମ ପ୍ରତି ଜୀବନଯାକ ଅନ୍ୟାୟ କରି ଆସିଛି କେବଳ ନୁହେଁ, ଏବେ ବି କରୁଛି । ରମଣ ମହର୍ଷିଙ୍କ କଥୋପକଥନ (ଇଂରାଜୀରେ) ପଢ଼ୁଥିଲି । ଜଣେ ଆଗନ୍ତୁକ ତାଙ୍କୁ ପଚାରିଲା, "ଶ୍ରୀରାମଚନ୍ଦ୍ର ସ୍ୱୟଂ ଈଶ୍ୱର ହୋଇ ସୀତାଙ୍କ ବିରହରେ ସାଧାରଣ ଲୋକ ପରି ବ୍ୟବହାର କଲେ କିପରି ? ତାଙ୍କୁ କିପରି ପୂର୍ଣ୍ଣ ମାନବ କୁହାଯିବ ?" ମହର୍ଷି କହିଲେ ଏହି କଥା ଥରେ ପାର୍ବତୀ ଶିବଙ୍କୁ ପଚାରିଥିଲେ । ଶିବ ପାର୍ବତୀଙ୍କି କହିଲେ, ଶ୍ରୀରାମ ସାଧାରଣ ମନୁଷ୍ୟପରି ବ୍ୟବହାର କରିବା ଭିତରେ ମଧ୍ୟ ପୂର୍ଣ୍ଣ ମାନବ । ତମେ ପରୀକ୍ଷା କର । ସୀତାର ରୂପ ଧାରଣ କରି ବିରହ ବିଧୁର ଶ୍ରୀରାମଙ୍କ ଆଗରେ ଉପସ୍ଥିତ ହୁଅ ।" ପାର୍ବତୀ, ସୀତା ହୋଇ ହଠାତ୍ ଶ୍ରୀରାମଙ୍କ ଆଗରେ ଦେଖା ଦେଲେ । କିନ୍ତୁ ଶ୍ରୀରାମଚନ୍ଦ୍ର ତାଙ୍କ ଆଡ଼କୁ ଦୃକ୍‌ପାତ ମଧ୍ୟ କଲେ ନାହିଁ । ତାଙ୍କର ସମସ୍ତ ପ୍ରାଣ ଏପରି ସୀତାଗତ ଥିଲା ଯେ ପାର୍ବତୀ-ସୀତା ଆଇଲେ ଓ ଗଲେ କିନ୍ତୁ ଶ୍ରୀରାମ ତାଙ୍କପରି ପୂର୍ଣ୍ଣ ଅନ୍ଧ ଥିବାପରି ବ୍ୟବହାର କଲେ ।

ସ୍ନେହର ପ୍ରେମ, ଏହା ପଢ଼ିଲା ମାତ୍ରେ ମୁଁ ତମ ପ୍ରତି କିପରି ବ୍ୟବହାର କରି ଆସିଛି, ତାହା ଭାବି ଭାବି ପଢ଼ା ବନ୍ଦ କରିଦେଲି । ଆଉ ପଢ଼ି ପାରିଲି ନାହିଁ । କାହିଁ ସେ ମଧୁର, ଉଦାର, ସୁନ୍ଦର ନିଷ୍କଳଙ୍କତା ଓ କାହିଁ ମୋର କଳୁଷିତ, ଛିନ୍ନ-କ୍ଷୁଣ୍ଣ ଜୀବନ ? ତମେ କିନ୍ତୁ ଏଇ ଖଣ୍ଡିଆ ଖାବରା, ଛିଣ୍ଡା ଦଦରା, ମଇଳା ମଳିଛ ମନୁଷ୍ୟଟାକୁ ଯେ ଅକ୍ଷୁଣ୍ଣ ଭାବରେ ସ୍ନେହ ଦେଇ ଆସିଛ, ଆଶା କରେ, ତାର ପୁରସ୍କାର ତମେ ପାଇଲଣି ଓ ପାଇବ । ମୁଁ ଦଉଡ଼ି ଦଉଡ଼ି ଅଶାନ୍ତ ହେଉଛି ଆସିଲି ଓ ଅଶାନ୍ତିରେ ହିଁ ମରିବି ।

ଲୁନୀ ପାଇଁ ଭାବନା କରୁଛି । ସବୁ ପିଲେ ଭଲ ହେବେ । ସେମାନଙ୍କ କଲ୍ୟାଣ ପାଇଁ ପ୍ରତ୍ୟହ ପ୍ରାର୍ଥନା କରିବ । ସେମାନଙ୍କର ମାନସିକ ଓ ଦୈହିକ, ଉଭୟ ସ୍ୱାସ୍ଥ୍ୟ ପାଇଁ ଈଶ୍ୱରଙ୍କୁ ଜଣାଇବ । ନିଶ୍ଚୟ ସେ ଶୁଣିବେ । କେତେ ବାଧା ବିଘ୍ନ ହୋଇ ଆସିଲେ । କିଏ ସବୁ ସଙ୍କଟରୁ ଆମକୁ ପାର କରାଇ ଆଣିଲେ ? ତମେ ନା ମୁଁ ? ସେହି ଅଜ୍ଞାତ ହସ୍ତର ଆଶୀର୍ବାଦକୁ ଆମେ କେତେ ସହଜରେ ଭୁଲିଯାଉ । ତମପରି ବୁଦ୍ଧିମତୀ ନାରୀ ଏହି ଅତି ଆବଶ୍ୟକ ଓ ଯୁକ୍ତିଯୁକ୍ତ ଦୃଷ୍ଟିକୋଣକୁ ଭୁଲିଯିବା ଉଚିତ ନୁହେଁ ।

ଘରଭଡ଼ା ଭଲରେ ଲାଗିଯିବାର ବ୍ୟବସ୍ଥା କରି ଆସ । ଇତି ।

ମାଷ୍ଟ୍ରା

# ମୋ ପ୍ରାଣ ଲିଲୁକୁ ଦେଖିବାକୁ ଚାହୁଁଛି

ବରହମ୍ପୁର
୧୯ । ୧୦ । ୧୯୬୫

ହେମ,

ନିର୍ବିଘ୍ନରେ ଓ ଯଥା ସମୟରେ ବରହମ୍ପୁରରେ ପହଞ୍ଚିଲି, ଯଦିଓ ବାଟଯାକ ବର୍ଷା ଚାଲିଥାଏ । କଟକ ଅପେକ୍ଷା ଏ ଅଞ୍ଚଳରେ ବର୍ଷା ଅଧିକ ହୋଇଥିବାର ଦେଖିଲି । କାଲି ରାତି ବର୍ଷା ଛାଡ଼ି ଯାଇଥିଲା, ଆଜି ସକାଳୁ ପୁଣି ବର୍ଷା ହେଉଛି ।

ପିଲାଏ ଏଠିକି ନ ଆସିଥିଲେ ଭଲ ହୋଇଥାନ୍ତା । ସେମାନେ ଆସି ଚାଲିଯିବା ଫଳରେ ଏ ଘରଟାରେ ଯେଉଁଆଡ଼େ ପାଦ ପକାଉଛି, ସେହିମାନେ ମନେ ପଡ଼ୁଛନ୍ତି ଓ ଚିତ୍ତ ଅସ୍ଥିର ହୋଇ ଉଠୁଛି । କଟକରେ ଦୁଇଦିନର ପାରିବାରିକ ସୁଖ ଭୋଗ ପରେ, କଟକ ଛାଡ଼ିଲା ପରେ ବାଟରେ ମଧ୍ୟ ମନ ଭାରି ବ୍ୟସ୍ତ ହେଲା । ଏଠିକି ଆସିଲା ପରେ ତ ମନେ ହେଲା ପୁଣି ଫେରିଯିବାକୁ ।

କିନ୍ତୁ ଆମେ ବର୍ତ୍ତମାନ ଯେମିତି ରହୁଛେ, ସେମିତି ରହିବା ଉଚିତ କୁହେଁ ବୋଲି ଭାବୁଛି । ଅସୁବିଧା ଓ ଅସୁନ୍ଦର । ଉପର ଘର ଭଡ଼ା ଦେଇ ଭଲ କାମ କରିନେ ବୋଲି ଭାବୁଛି । ଜୀବନର ସର୍ବସ୍ୱ ଖର୍ଚ୍ଚ କରି ଘର କଲେ କ'ଣ ପରଙ୍କ ପାଇଁ ? ତଳ ଘର ସବୁ ଶସ୍ତାରେ ଭଡ଼ା ଲାଗିଲେ ମଧ୍ୟ, ଯାହା ମିଳିବ ସେଇଥିରେ ଆମର ବେଳାକର ଅନ୍ନ ଯୋଗାଡ଼ ହୋଇ ପାରିବ । କି ଅଧିକ ଦରକାର ?

ବଗିଚାରେ କିଛି କିଛି ଭଲ ଆମଦାନୀ ହେଲଣି । ଭେଣ୍ଡି, କାକୁଡ଼ି ଓ ଝୁଡ଼ୁଙ୍ଗକୁ ପୁଳାଏ ଅଜି ଡାକଦ୍ ଘରକୁ ପଠାଇ ଦେଲି । ପିଅନ୍‌ଟା ଏକାନ୍ତ ଲୋଭୀ । ସେ ତାହାକୁ ଦେବାକୁ ନାରାଜ । ଏଣେ, ଯେତେ କହିଲେ ମଧ୍ୟ ଜଣକର ଆହାର ପାଇଁ ଦୁଇ ତିନିଜଣ, ଖାଇବା ଭଲ ଗୁଡ଼ାଏ ସିଝେଇ ଖାଲି ନଷ୍ଟ କରୁଛି । କାଲି ରାତି ପାଇଁ ତାକୁ କହିଲି ବଗିଚାର ଯାହା ମିଳିବା ଅଛି ଟିକିଏ ସନ୍ତୁଳି ଦିଅ, ଆଉ ଦି ପଟ ଜଲ୍ଲା ରୁଟି ବନେଇ ଦିଅ । ସେଥିପାଇଁ ତାର ଖର୍ଚ୍ଚ ଦୋ ରୂପେୟା, ଧିଅ,

ଅଟା ଇତ୍ୟାଦି ଇତ୍ୟାଦିରେ । ପୁଣି ତରକାରୀ ଯାହା ଜଳ, ମୁଁ ଅତି କଷ୍ଟରେ ତାର ସାମାନ୍ୟ ଅଂଶ ମାତ୍ର ଗ୍ରହଣ କରି ପାରିଲି । କାଙ୍କଟା ଭଳି ହାତରେ ସମସ୍ତ ପରିବାର ହିଁ ଓଳି ଖାଇଥାନ୍ତେ । ତାଙ୍କ ନାଇକାଣୀ ନେଲ—ଏକ ପ୍ରକାର ଭଲ ହେଲା ।

ଲିଲ୍‌ଠୁ ଚିଠି ନ ପାଇ ମୁଁ ବିଶେଷ ବ୍ୟସ୍ତ । ଟିକିଏ ବିରକ୍ତ ଓ ବ୍ୟଥିତ ହୋଇ ଚିଠିଟାଏ ଲେଖିଥିଲି—ପଢ଼ିଥିବ । ତା ମନରେ ଆଘାତ ହେଲା ବୋଧହୁଏ । ତାକୁ ଇଣ୍ଡିଆକୁ ଆଣିବା ପାଇଁ, ତାର କାଗଜପତ୍ର ମୁଁ ମଗାଇ ପଠାଇଥିଲି । ଏତେବେଳକୁ ଆସି ସାରନ୍ତାଣି । ଆଶଙ୍କା ହେଉଛି ସେ ବିରକ୍ତ ହୋଇଛି । ତମେ ଟିକିଏ କହ, ମୁଁ ତା' ଭଲ ପାଇଁ ହିଁ ଯାହା କିଛି କରୁଛି । ବର୍ତ୍ତମାନ ମୋ ପ୍ରାଣ ବିଶେଷଭାବରେ ଲିଲ୍‌କୁ ଦେଖିବା ପାଇଁ ଗ୍ଧୁହୁଁଛି ଯେପରି । କି ଜୀବନ ପାଇଥିଲି, ନିଜର ରକ୍ତ ଦୂରେ ଦୂରେ ରହିଲେ ଓ ହିନ କଟିଲା ଏକା ଏକା ବୈଶ୍ୟମାନଙ୍କ ରକ୍ତ ସହିତ ସଂଘର୍ଷ କରି କରି ।

ମୋର ସ୍ନେହ ନେବ । ଇତି ।

ମାମୁ



## ବାପାଙ୍କୁ ଉପଦେଶ

ବରହମ୍ପୁର (ଗଞ୍ଜାମ)
୨୦ । ୧୧ । ୧୯୬୫

ସ୍ନେହର ହେମ,

ତମକୁ ଲେଖିଥିବା ଶେଷ ଚିଠିଟିରେ ମୁଁ ଲେଖି ନ ଥିଲି କି, ଯେ ଲଲୁ ପାଇଁ ମନ ଭାରି ବ୍ୟସ୍ତ ରହୁଛି ଓ ତାକୁ ଦେଖିବାକୁ ଇଚ୍ଛା ହେଉଛି; ସେ ଚିଠି ପୋଷ୍ଟ କରିବାର ଘଣ୍ଟାକ ପରେ ଲଲୁର ଚିଠି ଆସି ପହଁଚିଲା । ଭଲ ଚିଠି ଲେଖିଛି; ବେଶ୍ ଖୁସି ହେଲା ମନ । କଲମ୍ବିଆ (ଭାଙ୍କୋଭର୍) ୟୁନିଭର୍ସିଟିରେ ଥିବା ତାର ପ୍ରଫେସର୍ ମଧ୍ୟ ବର୍ତ୍ତମାନ ଟୋରୋଣ୍ଟୋ ୟୁନିଭରସିଟିରେ ଅର୍ଥାତ୍ ଅଣ୍ଟେରିଓ-ଲଣ୍ଡନଠାରୁ ମାତ୍ର ଶହେ ମାଇଲ ଭିତରେ, ଦରକାର ପଡ଼ିଲେ ନିଜ ନିଜ ବିଷୟ ଚର୍ଚ୍ଚା କରିବା ପାଇଁ ଯେପରି ସହଜରେ ଏକାଠି ହୋଇ ପାରିବେ । ଲଲୁ ବାପାଙ୍କୁ ଉପଦେଶ ଦେଇଛି—ସ୍କୁଲର ଝୁଡ଼ କଟକ ଗୁଲିଯାଅ, ଲେଖାଲେଖି କର । ସେ ମୋର ସ୍ୱାସ୍ଥ୍ୟ ନେଇ ବଡ଼ ବ୍ୟସ୍ତ । ତୁମେ ତାକୁ କ'ଣ ଲେଖି ଦେଇଛ । ଲଲୁ ଲେଖିଛି ମଧ୍ୟ ଯେ ସେ କାନାଡ଼ାରେ ରହି ଲୁନୀ-ଟୁକୁନୀର ବିବାହ ଓ ବାବୁଲର ଶିକ୍ଷାର ଦାୟିତ୍ୱ ସହଜରେ ନେଇପାରେ, ଯାହା ସମ୍ଭବ ହେବନି ସେ ଇଣ୍ଡିଆ ଆସିଲେ ।

ଲଲୁର ଏ ପତ୍ର ପାଇ ମୁଁ ତାକୁ ଏକ ଲମ୍ବା ପତ୍ର ଲେଖି ପକାଇଛି ପ୍ରାଣର ସବୁ କଥା ଖୋଲି କହି । ତାକୁ, ଅନ୍ୟ କଥା ସବୁ ଭିତରେ କହିଛି ଯେ, ତୁ ଯଦି ଏଇତକ କଥା ବି ବର୍ଷ ଆଗେ କହିଥାନ୍ତୁ, ବାପାଙ୍କର ଦୁଶ୍ଚିନ୍ତା ଅଧେ କଟି ଯାଇଥାନ୍ତା ।

ସ୍କୁଲ ବସ୍ତାଟା ଥୁଆ ହୋଇଥିଲା । ହଠାତ୍ ଦେଖିଲିବେଳକୁ ବିପ୍ରଚରଣ ତାକୁ ଫିଟାଇ ଦେଇଛନ୍ତି । ପଚାରିଲି—କିଓ, ମା କହିଥିଲେ, ଯେଉଁମିତି ରଖିବାକୁ; ଫିଟାଇଲ କାହିଁକି ? ସେ କହିଲା—ରୋଷେଇ ପାଇଁ ସ୍କୁଲ ନାହିଁ । ଯାହାହେଉ, ଦି'ଟା ଦିନରେ ସ୍କୁଲଯାକ ଅଖାରୁ କାଢ଼ି ଭର୍ତ୍ତି କରି ଦେଇଛି । ଟୁକୁନୀ କ'ଣ କ'ଣ ଛୁଡ଼ି ଯାଇଛି ମନେ ପକେଇ ମତେ ଲେଖିବାକୁ କହ । ତା'ହେଲେ ସେ ସବୁ ମୁଁ ସଞ୍ଚିକରି ରଖିନେବି ।

ଲଲ୍ନ୍ ଚିଠି ପାଇଲି । ଲଲିତଙ୍କ ଚିଠି ନ ପାଇ ମନ ପୁଣି ବ୍ୟସ୍ତ ହେଉଛି । ହୁଏତ ମୋ ଉପରେ ସେ ବିରକ୍ତ ହୋଇଥାଇ ପାରେ ।

ଏଠି ମେଘୁଆ ପାଗ ଏପର୍ଯ୍ୟନ୍ତ ଘୋଟି ରହିଛି । ଏ ଘରର ସମ୍ମୁଖ ବାରଣ୍ଡାର ସବୁଠି ଗଳୁଛି ପାଣି । କମ୍ବଳଟା ଦେଇ ବଡ଼ ଉପକାର କରିଛ । ସବୁଠାରେ ଘୋଡ଼େଇ ହୋଇ ଶୋଉଛି । ନଚେତ୍ କଷ୍ଟ ହେଉଥାନ୍ତା । କାଲି ଏପରି କାଲୁଆ ହେଲା ଯେ, ଭଜନଭାତ ଅଗାଧୁଆ ରହିଗଲା । ବିପ୍ରଚରଣଙ୍କ ରନ୍ଧନ ପ୍ରଣାଳୀ ଏପରି ବିରକ୍ତିକର ହୋଇ ଉଠିଲାଣି ଯେ, କାଲି ପସ୍ପର ଓ ଖୋଜ ନଗୋଟାଏ କର୍ଣ୍ଣ-ଫ୍ଲେକସ୍ ପ୍ୟାକେଟ ଆଣିଲି । କର୍ଣ୍ଣ-ଫ୍ଲେକସ୍ ଓ ଦୁଧ ହେଲା ନୈଶାହାର । ଆଜି ସକାଳେ ଇକ୍‌ମିକ୍ କୁକର ଯାହା ପାଇଲି, ତାହା, ବିପ୍ରଚରଣଙ୍କ ଅନ୍ନଠାରୁ ଅଧିକ ତୃପ୍ତିକର ବୋଧ- ହେଲା । ପାଦ-ଫୁଲା କମିଛି—ତେବେ ପୂରା ଯାଇନି । ଜେନେରାଲ ହେଲ୍‌ଥ ଭଲ ଅଛି । କୁନିକି ଗୋଟିଏ ସିଂଘ ପାନଅ କିଣାଇ ଦେବ । ତା ତାଲିକାରେ ଅନ୍ୟ ଜିନିଷମାନଙ୍କ ଭିତରେ ଏଇଟା ଥିଲା । କେବଳ ଏଇଟି ହିଁ ଯୋଗାଇ ପାରି ନଥିଲି । ଇତି ।

ମାମୁ



# ତମର ଛବି

ବରହମ୍ପୁର (ଗଞ୍ଜାମ)
୧୮ । ୨ । ୧୯୭୬

ପ୍ରାଣର ହେମ,

ବଡ଼ ବ୍ୟସ୍ତ ଲାଗୁଛି । କାଲି ରାତରେ କାନ୍ଦି କାନ୍ଦି ଶୋଇଲି । କଟକ ଫେରି ଯିବାକୁ ହିଁ ଚାହୁଁଛି । ସେ ଦିନ ରାତି ତମେ ବିଳମ୍ବରେ ଆସିବାରୁ ତମ ପ୍ରତି ଅଭିମାନ କରିଥିବାରୁ, ବଡ଼ ଦୁଃଖ ଲାଗିରହିଛି ମନଭିତରେ । ଜୀବନଯାକ ଯାର ହୃଦୟକୁ ଶୈଳବନ୍ଧ କରି ଚାଲିଛି ସେ ଟିକିଏ ବିଳମ୍ବ କରି ଆସିଲା ବୋଲି, ଅଭିମାନ କରିବାର କି ଅଧିକାର ଅଛି ଏ ଲୋକର ? ସବୁ ଅବହେଳା ଓ ଅପରାଧ ସତ୍ତ୍ୱେ, ତମେ ଯେ ଏହି ଅଧମାଧମର ସ୍ନେହ ପାଇଁ ଏପରି କ୍ଷୁଧାତୁର; ତା ସେଦିନ ରାତରେ ହିଁ ଜାଣିଲି । ସମଗ୍ର ଚିତ୍ତଲୋକରେ ବିପ୍ଳବ ଘଟିଯାଇଛି । ସମଗ୍ର ଆତ୍ମାକୁ ଆଚ୍ଛନ୍ନ କରି ରହିଛି ତମର ଛବି ଓ ସ୍ମୃତି । ପିଲେ ତ ସବୁ ବଡ଼ ହୋଇଗଲେ, ବେଳେ ବେଳେ ଭାବୁଛି ପୁରୀ ପରି କୌଣସି ସ୍ଥାନରେ ଗୋଟିଏ ଛୋଟ କୁଡ଼ିଆରେ ଏଥର ଶାନ୍ତି-ସୁଖରେ ଶେଷ ଦିନଗୁଡ଼ିକ କଟାଇବା । ଝିଅମାନେ ଘରମାନଙ୍କ ପାଖକୁ ଚାଲିଯିବେ । ଦିନେ ତ ଏକା ହେବା । ବଳେ ହେବା ଅପେକ୍ଷା, ପ୍ରସ୍ତୁତ ହୋଇ ହେବା ବରଂ ଭଲ । ଏଠାରେ ବର୍ତ୍ତମାନ ସବୁ ଶାନ୍ତ ପରି ଜଣାପଡ଼ୁଛି । ଆଜି ଟୁକୁନୁ ସ୍କୁଲକୁ ଯିବ, ମୁଁ ମଧ୍ୟ କଲେଜକୁ ଯିବି । କୁନୀ ଓ ମୁଁ ସେଇଠି ମଧ୍ୟାହ୍ନ ଭୋଜନ କରୁ । ଏଇ କେତେ-ଦିନ ବନ୍ଦ ଥିଲା ।

ପ୍ରାଣର ସବୁ କଥା ମେଲେଇ ଦେବାକୁ ଭିତରୁ ଧକ୍କା ପରେ ଧକ୍କା ଲାଗୁଛି । କିନ୍ତୁ କ'ଣ କହିବି କିଛି ସ୍ପଷ୍ଟ ହେଉନି । କେବଳ ତମ ନିକଟକୁ ଚାଲିଯିବାକୁ ପ୍ରବଳ ଇଚ୍ଛାଟା ହିଁ ସ୍ପଷ୍ଟ ଧରାପଡ଼ୁଛି । ବେଳେ ବେଳେ ଭାବୁଛି, ଏନ୍‌ସାଇକ୍ଲୋପିଡ଼ିଆ ଛାଡ଼ି ଏଠାକୁ ଆସି ଭୁଲ୍ କଲି । ସବୁ ଲଣ୍ଡଭଣ୍ଡ, ତମକୁ ଛାଡ଼ି ଦୂରରେ ରହିଲି, ଟୁକୁନୁର ପଢ଼ାରେ ବ୍ୟାଘାତ ଇତ୍ୟାଦି ଇତ୍ୟାଦି ବିଭ୍ରାଟ ।

ବାଟରେ ବାଲୁଗାଁର ବାସୁଦେବ ସେନା ସହିତ ଭେଟ । ପୁଣି ଇଲେକ୍‌ସନରେ ଠିଆ ହେବାପାଇଁ ପ୍ରସ୍ତାବ । ସେ ଆଜି ବରହମ୍ପୁର ଆସିବ । ମୁଁ ତାକୁ କହିବି, ହେମଲତାଙ୍କୁ ଦେଖା କରିବାକୁ, ଶେଷ ନିଷ୍ପତ୍ତି ପାଇଁ ।

ମୋ ଅନୁପସ୍ଥିତିରେ କୁନୀ-ଟୁକୁମୀର କିଛି ଅସୁବିଧା ହୋଇ ନାହିଁ । ମୁଁ ଆସିଲା ବେଳକୁ ଦୁଇ ବିପ୍ର ଉପସ୍ଥିତ ଥିଲେ ଓ ସେମାନେ ଦୋସା ମଗାଇ ଖାଉଥିଲେ । ମୁଁ ମଧ୍ୟ ଏକ ଦୋସା ଖାଇନେଲି,—ରାତରେ ଆଉ କିଛି ଖାଇଲି ନାହିଁ । ଆଜି ଲଲିତକୁ ପତ୍ର ଦେଲି । ତାର୍ କଥା ଲେଖିଲି । ତମେ ବି ଲେଖିବ । ଲାଲୁକୁ ମଧ୍ୟ ଆଜି ବା କାଲି ଚିଠି ଦେବି । ବାବୁଲକୁ ଏପରି ବ୍ୟବହାର କରିବ, ଯେଉଁଥିରେ ସେ ତମର ଗଭୀର ଓ ଆଂଶକାମନ୍ଦ୍ୟ ସ୍ନେହ ଅନୁଭବ କରିବ । ସେ ବାପ ପରି ବଦ୍‌ରାଗୀ । ତାକୁ ବିରକ୍ତ ହୋଇ କଥା ଆଉ କହନା ।

ଆଉ କ'ଣ କହିବି, ଜାଣେନା । କେବଳ ସମଗ୍ର ପ୍ରାଣ ଦେଇ, ତମର ସାନ୍ନିଧ୍ୟ ହିଁ ଚାହୁଁଛି । ଇତି । ମାସ୍ତ୍ରା